# ବିଚିତ୍ର ଗାଥା ଏ'
# ସାପର କଥା



ଲେଖକ
ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି
ସ୍ନାତକୋତ୍ତର ପ୍ରାଣୀ ବିଜ୍ଞାନ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର
ଭୁବନେଶ୍ୱର-୭୫୧ ୦୦୪

ନବ ଦିଗନ୍ତ
ବିନୋଦବିହାରୀ, କଟକ-୨

# ବିଚିତ୍ର ଗାଥା ଏ' ସାପର କଥା

ଲେଖକ :
ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି


ପ୍ରକାଶକ :
ବିଭୁ ପ୍ରସାଦ ତ୍ରିପାଠୀ
ନବ ଦିଗନ୍ତ
ବିନୋଦ ବିହାରୀ
କଟକ - ୭୫୩ ୦୦୨

ପ୍ରଥମ ପ୍ରକାଶନ : ୨୦୦୪

ମୁଦ୍ରଣ:
ସାହୁ କମ୍ପ୍ୟୁଟର ୟୁନିଟ୍ ଏବଂ
ସଂଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ : ଟ. ୫୫-୦୦ ମାତ୍ର

# BICHITRA GATHA A' SAPARA KATHA

**Writer :**
Dr Prafulla Kumar Mohanty

**Publisher :**
Bhibhu Prasad Tripathy
**Naba Diganta**
Binodbihari
Cuttack - 753 002

First Edition 2004

**Printer :**
Sahoo Computer Unit &
Sangita Printers, Cuttack

**Price :** Rs.55-00 only

# ମୁଖବନ୍ଧ

ସୌର ପରିବାର ମଧ୍ୟରେ କୌଣସି ଗ୍ରହର ଯଦି ସ୍ୱତନ୍ତ୍ରତା ଥାଏ, ସେଇଟି ହେଉଛି ପୃଥିବୀ । ତାହାର କାରଣ ସତରେ କ'ଣ ? ଉତ୍ତରଟି ଅତି ସରଳ । ପୃଥିବୀ ଉପରେ ସମସ୍ତଙ୍କ ଲକ୍ଷ୍ୟର ଏକମାତ୍ର ବଳିଷ୍ଠ କାରଣ ହେଉଛି ପୃଥିବୀର ପ୍ରାକୃତିକ ପରିବେଶ, ଯାହାର କ୍ରୋଡ଼ରେ ବଞ୍ଚି ରହିଛନ୍ତି ଅସଂଖ୍ୟ ଉଦ୍ଭିଦ ଓ ପ୍ରାଣୀ । ଏମାନଙ୍କ ସମାରୋହ ଘଟିଛି ପୃଥିବୀ ଉପରିସ୍ଥ ଅତି ସୁନ୍ଦର କମନୀୟ ତଥା ମନୋରମ ପର୍ବତ, ନଦ, ନଦୀ, ଝରଣା, ଜଳପ୍ରପାତ ଓ ଉଷ୍ଣ ପ୍ରସ୍ରବଣ ଆଦି ଆମ ପରିବେଶ ମଧ୍ୟରେ । ଗଛଲତା, ଗୁଳ୍ମ , ବୁଦା ଓ ଦ୍ରୁମ ଆଦି ଉଦ୍ଭିଦଗୁଡ଼ିକୁ ବାଦ୍‌ଦେଲେ ଏ ଧରା ଆହୁରି ବଳିଷ୍ଠ ଓ ଜୀବନ୍ତ ହୋଇଛି କେବଳ ଏହି ପରିବେଶରେ ବିଚରଣ କରୁଥିବା ପ୍ରାଣୀମାନଙ୍କ ଲାଗି । ବାସ୍ତବିକ କେତେ ଯେ ପ୍ରାଣୀ ପୃଥିବୀ ବୁକୁରେ ଅଛନ୍ତି କହିବା ବଡ଼ ଦୁଃସାଧ୍ୟ । କେତେ ଆମ ଆଖିରେ ପଡୁଛନ୍ତି ତ କେତେକ ନଜରରେ ଆସୁନାହାନ୍ତି ଓ ଆଉ କେତେକଙ୍କୁ ମଧ୍ୟ ଆଖିରେ ଦେଖିବା ସମ୍ଭବ ନୁହେଁ । ନିଶ୍ଚିହ୍ନ ହୋଇଗଲେଣି ବି ଅନେକ ।

ମନୁଷ୍ୟ ସତରେ ବୀଜାଣୁଠାରୁ ଆରମ୍ଭ କରି ହାତୀ ଓ ତିମି ଆଦି ପ୍ରାଣୀମାନଙ୍କ ପରି ପରିବେଶର ଏକ ପ୍ରାଣୀ । କିନ୍ତୁ ତା' ଉପରେ ଅତ୍ୟାଚାର, ଶିକାରୀ ଓ ଲୋଭ ଯୋଗୁଁ ଆଜି ଏ ପ୍ରାଣୀମାନେ ସତରେ କେଉଁ ଅବସ୍ଥାରେ ଅଛନ୍ତି ଭାବିଲେ ବଡ଼ ଅଡୁଆ ଅଡୁଆ ଲାଗେ । ଓଡ଼ିଶାରେ ପ୍ରଳୟଙ୍କରୀ ବାତ୍ୟାରେ ଘରଦ୍ୱାର ଉଡ଼ିଗଲା ବା ଭାଙ୍ଗିଗଲା ପରେ ଅଥବା ଗୁଜୁରାଟରେ ଘଟିଥିବା ଭୂମିକମ୍ପରେ ଛିନ୍‌ଭିନ୍ ହୋଇ ଭାଙ୍ଗିଗଲା ପରେ ମନୁଷ୍ୟମାନେ ଯେପରି ସର୍ବହରା ହୋଇ କାଳାତିପାତ କଲେ ଠିକ୍ ସେହିପରି ଅସହାୟ ମନେ କରିଥିବା ପ୍ରାଣୀମାନେ କ'ଣ ସତରେ ସେମିତି କଷ୍ଟ ଅନୁଭବ କରିପାରୁ ନଥିବେ ! ଦିନକୁ ଦିନ ତାଙ୍କ ଘର ଅର୍ଥାତ୍ ଜଙ୍ଗଲ, ପାହାଡ଼, ପର୍ବତ ଓ ହୁଙ୍କା ଆଦି ଭାଙ୍ଗି ନଷ୍ଟଭ୍ରଷ୍ଟ କରିବା ଫଳରେ ଏବେ ଦେଖାଯାଉଛି ପାରାମାନେ ଘରେ ବସା ବାନ୍ଧୁଛନ୍ତି ତ ଆଉ କେତେକ ପକ୍ଷୀ ସ୍ଥାନ ଅଭାବରେ ବିଦ୍ୟୁତ୍ ଖୁଣ୍ଟପରି ବିପଦସଙ୍କୁଳ ସ୍ଥାନରେ ଘର କରି ରହୁଛନ୍ତି । ନିରାପଦ ନହେଲେ ମଧ୍ୟ ସୁସ୍ଥ ବିପଦଶୂନ୍ୟ ସ୍ଥାନ ନପାଇ ଏପରି ବସାବାନ୍ଧି ରହିବାରେ ସେମାନେ ଲାଗିପଡ଼ିଛନ୍ତି । ଜଙ୍ଗଲ ସଫା ସାଙ୍ଗକୁ

ସହରାଞ୍ଚଳ ପ୍ରତିଷ୍ଠା, ବନ୍ଧବାଡ଼ ତିଆରି ଏବଂ କଳକାରଖାନା ଆଦିର ଗଠନ ସବୁ ଏ ପ୍ରାଣୀମାନଙ୍କର ଜୀବନକୁ କରିଦେଇଛି ଅତି ବୀଭତ୍ସ । କେଉଁଠି ଚେନାଏ ଜାଗା ନାହିଁ ତ କେଉଁଠି ଦୂଷିତ ବାଷ୍ପ ତ ଆଉ କେଉଁଠି ଦିନରାତି ଠକ୍ଠାକ୍ ଶବ୍ଦ । କେମିତି ସେମାନେ ବଞ୍ଚିବେ କୁହନ୍ତୁ ତ ? ମନୁଷ୍ୟ ଭାବୁଛି ସତରେ ଯେମିତି ସେ ପ୍ରକୃତି ତଥା ପ୍ରକୃତି ମଧ୍ୟସ୍ଥ ଅନ୍ୟ ସମସ୍ତ ଉଦ୍ଭିଦ ଓ ପ୍ରାଣୀମାନଙ୍କୁ ଜନ୍ମ ଦେଇଛି ଓ ସୃଷ୍ଟି କରିଛି । ଆଉ ମରିଗଲେ ବା ସଂଖ୍ୟା କମିଗଲେ କିଛି କ୍ଷତି ନାହିଁ । ସେ ହୁଏ ତ ଅନ୍ୟମାନଙ୍କୁ ସୃଷ୍ଟି କରିପାରିବ ବା କରି ନପାରିଲେ ମଧ୍ୟ କିଛି ଯାଏ ଆସେ ନାହିଁ । ଏମିତି ଅନେକ ବେପରୁଆ ମନୋଭାବ । ଏପରି ଭ୍ରମାତ୍ମକ ଖିଆଲି ମନୋଭାବ ହେତୁ କେତେ ଯେ ପ୍ରାଣୀ ଲୋପ ପାଇଗଲେଣି, ସେମାନଙ୍କ ହିସାବ ନାହିଁ । ଆଉ ହିସାବ ପାଇଁ କେତେକ ବୈଜ୍ଞାନିକ ଓ ବେସରକାରୀ ତଥା ସରକାରୀ ଅନୁଷ୍ଠାନ ଚେଷ୍ଟିତ । କ'ଣ ଏହା ସହଜ କଥା ? ଦେଖାଯାଉ ଘଟଣା କେଉଁଆଡ଼େ ଯାଉଛି ।

ହଁ ମୋଟାମୋଟି ଭାବରେ ଆମ ଚାରିପଟେ ଯେତେ ଜୀବଜନ୍ତୁ ଆଦି ଅଛନ୍ତି, ସେମାନେ ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ ଲାଗିଛନ୍ତି ଆମ କାମରେ । ପରିବେଶ ସନ୍ତୁଳନରେ ସେମାନେ ହେଉଛନ୍ତି ପରିବେଶ ପ୍ରହରୀ ଓ ରକ୍ଷକ । କିଏ ବିକ୍ଷପରେ ତ କିଏ ଅନିଷ୍ଟକାରୀ ପ୍ରାଣୀମାନଙ୍କୁ ଖାଇ ଦମନ କରିବାରେ ତ ଆଉ କିଏ ପ୍ରାକୃତିକ ଭାରସାମ୍ୟ ରକ୍ଷା କରିବାରେ—ଏମିତି କିଛି ନା କିଛି କାର୍ଯ୍ୟରେ ଆମକୁ ସାହାଯ୍ୟ କରିବାରେ ଲାଗିଛନ୍ତି ସେମାନେ । ଆଉ ଆମେ ଗୋଟିଏ ବଡ଼କଥା ବୋଧହୁଏ ଭୁଲିଯାଉଛୁ । ଏ ପ୍ରାଣୀମାନଙ୍କର ଅବଦାନ ରହିଛି ଖାଦ୍ୟ, ବସ୍ତ୍ର, ପାନୀୟ ଓ ଔଷଧ ଆଦି ଯୋଗାଇବାରେ । ପ୍ରାଣୀ ଓ ମନୁଷ୍ୟ ଏମାନେ ପ୍ରାକୃତିକ ପରିବେଶର ସମସ୍ତେ ଏକ ଅବିଚ୍ଛେଦ୍ୟ ଅଙ୍ଗ । ଗୋଟିକୁ ବାଦ୍ ଦେଇ ଅନ୍ୟଟି ବଞ୍ଚିବା ଅସମ୍ଭବ ବା କଷ୍ଟ । ତେଣୁ ସେମାନଙ୍କ ଗୁରୁତ୍ୱ ଓ ସେମାନଙ୍କର ମହତ୍ତ୍ୱ ବୁଝିବା ଆମ ସମସ୍ତଙ୍କର ଦାୟିତ୍ୱ ନୁହେଁ କି ? ସେମାନଙ୍କୁ ସୁରକ୍ଷାଦେବା, ତାଙ୍କର ବଂଶବୃଦ୍ଧିରେ ସହାୟକ ହେବା ଏବଂ ସର୍ବୋପରି ସେମାନଙ୍କୁ ସଂରକ୍ଷଣ କରି ଭଲପାଇବା ଆମର କର୍ତ୍ତବ୍ୟ ନୁହେଁ କି ? ତାଙ୍କର କଥା ଟିକିଏ ଭାବିଲେ ସତରେ ମନରେ ନିଶ୍ଚୟ ଦୟା ଆସିବ ।

ମଣିଷର ଜୀବଜଗତ ପ୍ରତି ଖିଆଲି ମନୋଭାବ ଯୋଗୁଁ ଯେଉଁ ପରିମାଣରେ ଦିନକୁ ଦିନ ଜୀବଜନ୍ତୁ ହ୍ରାସ ପାଉଛନ୍ତି ସେମାନଙ୍କ ବିନା ମଣିଷ ଏ ସୁନ୍ଦର ପୃଥିବୀରେ ରହିପାରିବ ତ ?

ଅନେକ ଜୀବଜନ୍ତୁ ମଧ୍ୟରେ ସାପ ବି ଗୋଟିଏ ଜୀବ । ବାଘ, ଭାଲୁ, ହରିଣ ଓ ମଣିଷ ପରି ଏ ଗୋଟିଏ ବି ମେରୁଦଣ୍ଡୀ ଜୀବ । ପେଟକୁ ଘୋଷାରି ଘୋଷାରି ବା ଭରାଦେଇ ଭୂଇଁ ଉପରେ ସାପମାନେ ଚାଲନ୍ତି । ସେଥିପାଇଁ ଏମାନେ ସରୀସୃପ । ଅର୍ଥାତ୍ ଝିଟିପିଟି, ଏଣ୍ଡୁଅ, କଇଁଚ, କୁମ୍ଭୀର ଓ ଗୋଧି ଶ୍ରେଣୀର ଏ ପ୍ରାଣୀମାନେ । କିନ୍ତୁ ମଣିଷ ଏମାନଙ୍କୁ ଦେଖିଲେ ଡରେ । ଦେଖିବାମାତ୍ରେ ପିଟି ମାରିଦିଏ । ଭୟଙ୍କର ଭାବି ରାତିରେ ଏମାନଙ୍କୁ ସାପ ବୋଲି କହନ୍ତି ନାହିଁ । ପିଲା କାହିଁକି ବଡ଼ ବଡ଼ ଲୋକମାନେ ରାତିରେ ଏହାର ନାଁ ଶୁଣିଲେ ଆସ୍ତିକ ଆସ୍ତିକ ବୋଲି କହନ୍ତି । ଆଉ କିଏ କିଏ ସାପ ବଦଳରେ ଲମ୍ବଜନ୍ତୁ ବୋଲି କହନ୍ତି । ଏମାନଙ୍କ ବିଷୟରେ ବିଭିନ୍ନ ସ୍ଥାନ ଓ ବିଭିନ୍ନ ରାଜ୍ୟର ଲୋକେ ବିଭିନ୍ନ କଥା କହିଥାନ୍ତି । ଜୀବଜଗତରେ ପ୍ରାଣୀମାନଙ୍କ ବିଷୟରେ ଯେତେ ଲୋକକଥା ଶୁଣାଯାଏ, ସବୁଠାରୁ ଅଧିକ ଲୋକକଥା, କାହାଣୀ, ବର୍ଣ୍ଣନା ଓ ଇତିହାସ ଶୁଣିବାକୁ ବା ପଢ଼ିବାକୁ ମିଳେ ସାପ ସମ୍ବନ୍ଧରେ । ଅନେକ କଥା ଭୁଲ୍ । ଅନେକ ଅନ୍ଧବିଶ୍ୱାସ ଏମାନଙ୍କ ବିଷୟରେ କୁହାଯାଏ । ତେବେ ଏମାନେ ସାଧାରଣତଃ ଡରକୁଳା ଜୀବ । ଶବ୍ଦ ଟିକିଏ ବାରିଲେ ଚଟ୍‌କରି ଲୁଚି ପଳେଇଯିବାକୁ ବସନ୍ତି । ଆଖି ଆଗରୁ ଲୁଚି ଛପି ଯାଆନ୍ତି କାଳେ କିଏ ସେମାନଙ୍କୁ ମାରିଦେବ ବୋଲି ।

ଏମାନେ ହେଉଛନ୍ତି ସାପୁଆକେଳାଙ୍କ ଖେଳନା । ଏମାନଙ୍କୁ ଦେଖାଇ, ଏମାନଙ୍କ ବିଷୟରେ କହି, ଦି' ପଇସା ରୋଜଗାର କରି ସେମାନେ ଚଳନ୍ତି । ତେବେ ଅନେକ ଭ୍ରମଧାରଣା ଏମାନଙ୍କ ବିଷୟରେ ଦୂର କରିବା ହେଉଛି ଏ ବହିର ଉଦ୍ଦେଶ୍ୟ । ଆମ ରାଜ୍ୟର ଲୋକମାନେ ଓ ପିଲାମାନେ ଏ ପୁସ୍ତକକୁ ପଢ଼ି ସାପ ବିଷୟରେ କିଛି ଜାଣିଲେ କିଛି ଭୁଲଧାରଣା ଦୂର କରିପାରିଲେ ଏବଂ ଆମ ପରିବେଶରୁ ଏ ସାପମାନଙ୍କୁ ବଞ୍ଚାଇବାକୁ ଚେଷ୍ଟା କଲେ ଲେଖକଙ୍କର ପ୍ରଚେଷ୍ଟା ସାର୍ଥକ ହେବ ବୋଲି ବିଶ୍ୱାସ । ଚାଲନ୍ତୁ ଆମେ ସମସ୍ତେ ଏହାକୁ ପଢ଼ି, ଏପରି ସରଳ ଜୀବ ବିଷୟରେ ଜାଣି ଏ ସାପମାନଙ୍କୁ ନିପାତ ନକରି ଆମ ପରିବେଶରୁ ରକ୍ଷାକରିବା ଦିଗରେ ଚେଷ୍ଟା କରିବା । ତାହାହେଲେ ଆମ ପରିବେଶର ପ୍ରାଣୀମାନଙ୍କ ସହ ଆମେ ଭଲରେ ବଞ୍ଚିପାରିବା ।

୨୬ ଜାନୁୟାରୀ, ୨୦୦୪ — ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତ

ସରସ୍ୱତୀ ପୂଜା ।

# ସୂଚୀ

# ପୃଥିବୀ ଓ ଜୀବଜଗତ

ଆମ ପୃଥିବୀ ସତରେ କେଡ଼େ ସୁନ୍ଦର ! ଏ ପୃଥିବୀ ଏକମାତ୍ର ଗ୍ରହ ଯେଉଁ ଗ୍ରହରେ କି ଜୀବସତ୍ତା ସମ୍ଭବ ହୋଇଛି । ମାନେ ଏ ଗ୍ରହରେ ପ୍ରାଣୀ ଓ ଉଦ୍ଭିଦ ଆଦି ପୂରି ରହିଛନ୍ତି । କାହିଁ କେତେ ଯେ ପ୍ରାଣୀ ଆଉ କେତେ ଯେ ଗଛସବୁ ରହିଛି ସେମାନଙ୍କୁ ଗଣି ଜାଣିବା କାଠିକର ପାଠ । ଉଦ୍ଭିଦ ବା ଗଛଗୁଡ଼ିକ ସ୍ଥିର ଥିବାବେଳେ ଜୀବଜନ୍ତୁଗୁଡ଼ିକ ସବୁବେଳେ ଚଳପ୍ରଚଳ । କିଏ ରାତିରେ ତ କିଏ ଦିନରେ ବୁଲାଚଲା କରନ୍ତି । କିଏ ଭୂଇଁରେ ତ କିଏ ଜଳରେ ଆଉ କିଏ ଆକାଶରେ ଉଡ଼ିବୁଲନ୍ତି । ତା' ସାଙ୍ଗକୁ କିଏ କିଏ ମିଠାପାଣିରେ ତ କିଏ ଲୁଣିପାଣିରେ ଆଉ କିଏ କିଏ ମିଠା ଲୁଣି ମିଶା ପାଣିରେ ରହିଥାଆନ୍ତି । ସମୁଦ୍ର କଥା କହିଲେ ନସରେ । କେତେ ଯେ ଜୀବଜନ୍ତୁ ତା' ପେଟରେ ପୂରିରହିଛି, ତାହା ଭାବିହେବନି । ଆଖିକୁ ଦେଖାନଯିବା ପ୍ରାଣୀଠାରୁ ଆରମ୍ଭ କରି ତିମି ପରି ବିରାଟ ବିରାଟ ଜୀବ ସବୁର ଗନ୍ତାଘର ଆମର ଏ ସମୁଦ୍ର ।

ସତରେ ଏତେ ଜୀବ କଥା ଭାବିଲେ ଲାଗୁଛି ଯେ ଆମର ଏ ପୃଥିବୀରେ ଅନେକ କିସମର ଜୀବଜନ୍ତୁ ସବୁ ଅଛନ୍ତି । ସେମାନେ ଅସୁମାରି ସତ । କିନ୍ତୁ ସୃଷ୍ଟି ଆରମ୍ଭରୁ ଏ ପର୍ଯ୍ୟନ୍ତ ଧୀରେ ଧୀରେ ଗୋଟି ଗୋଟି ହୋଇ ପ୍ରକାର ପ୍ରକାର ପ୍ରାଣୀସବୁ ଜନ୍ମ ହୋଇଛନ୍ତି । ପ୍ରାୟ ଶହେ କୋଡ଼ିଏ କୋଟି ବର୍ଷ ପୂର୍ବେ ପୃଥିବୀର ଜଳଭାଗରେ ପ୍ରଥମେ ଏକପ୍ରକାର ଛୋଟିଆ ପ୍ରାଣୀର ସୃଷ୍ଟି ହେଲା । ସେଇଟି ହେଉଛି ଏକକୋଷୀ ପ୍ରାଣୀ । କେତେକ ଏ ପ୍ରାଣୀକୁ ଜେଲି ବୋଲି ମଧ କହନ୍ତି । କାଳକ୍ରମେ ଜେଲିରୁ ଭିନ୍ନ ଭିନ୍ନ ଅମେରୁଦଣ୍ଡୀ ପ୍ରାଣୀ ଓ ଧୀରେ ଧୀରେ ମେରୁଦଣ୍ଡୀ ପ୍ରାଣୀମାନେ ଦେଖାଦେଲେ ।

ଆମର ଜୀବଜଗତକୁ ଦୁଇ ଭାଗରେ ବିଭକ୍ତ କରାଯାଏ । ଗୋଟିଏ ହେଉଛି ଅମେରୁଦଣ୍ଡୀ ଓ ଦ୍ୱିତୀୟଟି ହେଉଛି ମେରୁଦଣ୍ଡୀ । ଅମେରୁଦଣ୍ଡୀ ପ୍ରାଣୀମାନଙ୍କର ଆମ ପିଠିରେ ଲମ୍ବାହାଡ଼ ଥିବାପରି ଲମ୍ବାହାଡ଼ ନଥାଏ । ସେ ଲମ୍ବାହାଡ଼ଟିକୁ କହନ୍ତି ମେରୁଦଣ୍ଡ । କିନ୍ତୁ ମେରୁଦଣ୍ଡ ଥିବା ପ୍ରାଣୀମାନେ ହେଉଛନ୍ତି ମେରୁଦଣ୍ଡୀ । ଅମେରୁଦଣ୍ଡୀ ପ୍ରାଣୀମାନେ ପୁଣି ଆଠ ଭାଗରେ ବିଭକ୍ତ । ସେମାନେ ହେଉଛନ୍ତି—(୧) ଏକକୋଷୀ, (୨) ଛିଦ୍ରାଳ, (୩) ଏକନଳିଦେହୀ,

(୪) କୃମି, (୫) ଅଙ୍ଗୁରୀୟମାଳ, (୬) ସନ୍ଧିପଦ, (୭) ଶମ୍ବୁକ ଓ (୮) କଣ୍ଟକତ୍ୱକ । ଆଉ ମେରୁଦଣ୍ଡୀ ପ୍ରାଣୀମାନେ ପାଞ୍ଚଭାଗରେ ବିଭକ୍ତ । ସେମାନେ ହେଉଛନ୍ତି–(୧) ମାଛ, (୨) ବେଙ୍ଗ, (୩) ସରୀସୃପ, (୪) ପକ୍ଷୀ ଏବଂ (୫) ସ୍ତନ୍ୟପାୟୀ ।




□□□

# ସରୀସୃପ ଜଗତ

ପୃଥିବୀରେ ବିଭିନ୍ନ ପ୍ରକାର ଜୀବଜନ୍ତୁ ଧୀରେ ଧୀରେ ଦେଖାଦେଇଛନ୍ତି । ଅମେରୁଦଣ୍ଡୀ ପ୍ରାଣୀମାନଙ୍କ ପରେ ପରେ ମେରୁଦଣ୍ଡୀ ପ୍ରାଣୀମାନଙ୍କର ସୃଷ୍ଟି ବୋଲି ବିଶ୍ୱାସ କରାଯାଏ । ମେରୁଦଣ୍ଡୀ ପ୍ରାଣୀମାନଙ୍କ ମଧ୍ୟରେ ମାଛ, ବେଙ୍ଗ ପରି ଉଭୟଚର, ସରୀସୃପ, ପକ୍ଷୀ ଓ ସ୍ତନ୍ୟପାୟୀ ପ୍ରାଣୀମାନେ କ୍ରମାନ୍ୱୟରେ ଗୋଟିକ ପରେ ଗୋଟିଏ ଆମର ଏ ପୃଥିବୀରେ ପାଦ ପକେଇଛନ୍ତି । ମାଛମାନେ ପ୍ରଥମେ ଜଳରେ ଦେଖାଦେଇଥିଲେ । ତାପରେ ଜଳ ଓ ସ୍ଥଳ ଉଭୟ ସ୍ଥାନରେ ବିଚରଣ କଲେ ବିଭିନ୍ନ ପ୍ରକାରର ବେଙ୍ଗ ପରି ଉଭୟଚର ଜୀବ । କ୍ରମେ ଜଳଭାଗରୁ ସ୍ଥଳଭାଗ ଆଡ଼କୁ ମୁହାଁଇଲେ ଏ ପ୍ରାଣୀମାନେ । ଏପରି ପ୍ରଥମ ସ୍ଥଳଭାଗର ପ୍ରାଣୀମାନେ ହେଲେ ସରୀସୃପ । ପ୍ରାଣୀମାନେ ସେତିକିରେ ସନ୍ତୁଷ୍ଟ ନ ହୋଇ ମନଇଚ୍ଛା ଏଣେ ତେଣେ ବୁଲିବାକୁ ଇଚ୍ଛାକରି ଆକାଶରେ ଉଡ଼ିବାକୁ ଚେଷ୍ଟା କଲେ । ତେଣୁ ପ୍ରଥମେ ଆକାଶରେ ଉଡ଼ିବାକୁ ଲାଗିଲେ ପକ୍ଷୀମାନେ । ଶେଷରେ ପହଞ୍ଚିଲେ ସ୍ତନ୍ୟପାୟୀ ଜୀବମାନେ । ଏ ସ୍ତନ୍ୟପାୟୀ ଜୀବଗୁଡ଼ିକ ଦେଖାଗଲେ ଜଳରେ, ସ୍ଥଳରେ, ମରୁଭୂମିରେ, ଗାତ ଭିତରେ, ଗଛରେ ଏବଂ ଖୁବ୍ କମ୍ କେତେକ ଆକାଶରେ ଉଡ଼ିଲେ । ଏପରି ଭାବରେ ମେରୁଦଣ୍ଡୀ ପ୍ରାଣୀମାନେ ମାଛଠାରୁ ଆରମ୍ଭ କରି ସ୍ତନ୍ୟପାୟୀ ପ୍ରାଣୀ ପର୍ଯ୍ୟନ୍ତ ଜୀବଗୁଡ଼ିକର ଆକାର, ବ୍ୟବହାର ଓ ଗତିବିଧି ବେଶ୍ ଭିନ୍ନ ଭିନ୍ନ ।

ବର୍ତ୍ତମାନ ଦେଖିବା କେବଳ ସରୀସୃପ ପ୍ରାଣୀମାନଙ୍କ କଥା । ଯେଉଁ ପ୍ରାଣୀମାନେ ସ୍ଥଳଭାଗର ଭୂଇଁ ବା ମାଟି ଉପରେ ପେଟକୁ ଘୋଷାରି ଘୋଷାରି ଚାଲନ୍ତି, ସେମାନେ ହେଉଛନ୍ତି ସରୀସୃପ । ଜୀବଜଗତର ସରୀସୃପ ଶ୍ରେଣୀରେ ୫ (ପାଞ୍ଚ) ପ୍ରକାର ପ୍ରାଣୀମାନେ ଅଛନ୍ତି । ସେମାନେ ହେଲେ–

୧. ଡାଇନୋସର
୨. କଇଁଚ ବା କୂର୍ମ
୩. କୁମ୍ଭୀର, ଘଡ଼ିଆଳ, ଗୋମୁହାଁ ଓ ଆଲିଗେଟର
୪. ଝିଟିପିଟି, ଏଣ୍ଡୁଅ ଓ ଗୋଧି
୫. ସାପ ।

ଏ ପାଞ୍ଚପ୍ରକାର ସରୀସୃପମାନଙ୍କ ମଧ୍ୟରୁ ସବୁଠାରୁ ପୁରୁଣା ଜୀବମାନେ ହେଉଛନ୍ତି ଡାଇନୋସର । ଏହା ଏକ ଇଂରାଜୀ ଶବ୍ଦ । ଏ ଇଂରାଜୀ ଶବ୍ଦ

ଡାଇନୋସର (Dinosour)ର ଅର୍ଥ ହେଉଛି ଭୟଙ୍କର ଓ ବିରାଟକାୟ ସରୀସୃପ । ଏମାନେ ଆଉ ପୃଥିବୀରେ କେହି ବଞ୍ଚିରହିନାହାନ୍ତି । ସମସ୍ତେ ଲୋପ ପାଇଯାଇଛନ୍ତି । ଆକାର ଏମାନଙ୍କର ଥିଲା ବେଶ୍ ବଡ଼ । ଏମାନଙ୍କ ମଧ୍ୟରୁ କିଏ ଜଳରେ ତ କିଏ ସ୍ଥଳଭାଗରେ ଆଉ କିଏ ମଧ୍ୟ ଆକାଶରେ ଉଡ଼ି ବୁଲୁଥିଲେ । ଖାଦ୍ୟ ଥିଲା ବି ବିଭିନ୍ନ ପ୍ରକାରର । ଏମାନଙ୍କୁ ବର୍ତ୍ତମାନ ଚଳଚ୍ଚିତ୍ରରେ ଦେଖିବାକୁ ମିଳେ । ତାପରେ କଇଁଚମାନେ କିଏ ମଧୁର ଜଳରେ ତ କିଏ ସମୁଦ୍ରର ଲୁଣିପାଣିରେ ଅଥବା ଆଉ କେଉଁମାନେ ସ୍ଥଳଭାଗରେ ବି ଦେଖାଯାଆନ୍ତି । ଏମାନେ ଅନେକ ବର୍ଷ ବଞ୍ଚିପାରନ୍ତି । ତୃତୀୟ ପ୍ରକାର ସରୀସୃପ ହେଲେ କୁମ୍ଭୀର । ଏମାନେ ଆମ ଦେଶ ଭାରତରେ ତିନି ପ୍ରକାରର ଅଛନ୍ତି । ସେଗୁଡ଼ିକ ହେଉଛନ୍ତି—ମଧୁର ଜଳରେ ଦେଖାଯାଉଥିବା ମଗର (ଭୁଲରେ କୁହାଯାଇଥାଏ ମଗରମାଛ) *(Crocodylus palustris)*, କ୍ଷାରଜଳ (ମଧୁର ଓ ଲୁଣି ମିଶା)ରେ ଦେଖାଯାଉଥିବା ଗୋମୁହଁ କୁମ୍ଭୀର *(Crocodylus porosus)* ଓ ମଧୁର ଜଳରେ ରହୁଥିବା ଘଡ଼ିଆଳ *(Gavialis gangeticus)* । ଏ ତିନିପ୍ରକାର କୁମ୍ଭୀର ଛଡ଼ା ଆଉ ଏକ ପ୍ରକାର ଆଲିଗେଟର ନାମକ କୁମ୍ଭୀର *(Alligator mississippensis)* ଦେଖିବାକୁ ଆମ ଦେଶର କୁମ୍ଭୀର ଭଳି; କିନ୍ତୁ ଦେଖାଯାଆନ୍ତି ଚୀନଦେଶ ଓ ଉତ୍ତର ଆମେରିକାରେ । ଚତୁର୍ଥ ପ୍ରକାର ସରୀସୃପ ହେଉଛନ୍ତି ଘରେ ଦେଖାଯାଉଥିବା ଝିଟିପିଟି, ବଗିଚାରେ ଦେଖାଯାଉଥିବା ଏଣ୍ଡୁଅ ଓ ଗୋଧି ଇତ୍ୟାଦି । ଶେଷରେ ଆସୁଛନ୍ତି ସାପ । ଦେଖିବାକୁ, ଶୁଣିବାକୁ ଆଉ ସେ ବିଷୟରେ ଗପସପ ହେବାକୁ ଅତି ଭୟଲାଗେ । ଏମିତି ଏକ ଜୀବ ଯେ ତାକୁ କିଏ ନ ଡରେ ବୋଲି କହିହେବ ନାହିଁ । ସାଧାରଣ ଲୋକମାନେ ତାକୁ ସାପ ବୋଲି ନ କହି ଲମ୍ବଜନ୍ତୁ ବୋଲି କହିଥାଆନ୍ତି । ଆମର ସରୀସୃପ ଦୁନିଆ ଏପରି ଭାବରେ ଏତେଗୁଡ଼ିଏ ଓ ଏତେ ପ୍ରକାର ଜୀବକୁ ନେଇ ଗଠିତ ।



ଷ୍ଟେଗୋସଉରସ୍ ଡାଇନୋସୋର



ଆଙ୍କାଇଲୋସଉରସ୍ ଡାଇନୋସର



ଡିପ୍ଲୋଡ଼ୋକୋସ ଡାଇନୋସର



ଶକ୍ତ ଗୋଡ଼ଥିବା ଡାଇନୋସର (ଆଲୋସଉରସ୍)



ବ୍ରୋଣ୍ଟୋସଉରସ୍ ଡାଇନୋସର



କ୍ୟାମଟୋସଉରସ୍ ଡାଇନୋସର



ବୃହତ୍ତମ ମାଂସାସୀ ଡାଇନୋସର(ଟାଇରାନୋସଉରସ୍)



ଇଗୁଆନୋଡ଼ୋନ ନାମକ ଡାଇନୋସର



ଜଳଚର ମାଛପରି ଡାଇନୋସର(ଇକ୍‌ଥାଇଓସଉରସ୍)



ଆହୁଲାପରି ଗୋଡ଼ଯୁକ୍ତ ଜଳଚର ଡାଇନୋସର(ପ୍ଲେସିଓସଉରସ୍)

ସରୀସୃପ ଜଗତର ପୁରୁଣା ସରୀସୃପ କଇଁଚ—



ମଧୁରଜଳ କଇଁଚ



ସମୁଦ୍ର କଇଁଚ

କୁମ୍ଭୀର : ସରୀସୃପ ଶ୍ରେଣୀର ଆଉ ଏକପ୍ରକାର ଜୀବ—



ଘଡ଼ିଆଳ କୁମ୍ଭୀର



ଭାରତରେ ଦେଖାଯାଉନଥିବା କୁମ୍ଭୀର (ଆଲିଗେଟର)



ସରୀସୃପ ଜଗତର ଆଉ ଏକ ଜୀବ ମଧୁରଜଳ କୁମ୍ଭୀର ବା ମଗର

ଝିଟିପିଟି ଓ ଏଣ୍ଡୁଅ ଜାତିର ସରୀସୃପ—



ସାପ ପରି ଜିଭ; କିନ୍ତୁ ସାପ ନୁହେଁ (ଗୋଧି)



ଉଡ଼ିପାରୁଥିବା ଏକ ସରୀସୃପ (ଡ୍ରାକୋ)

# ସାପମାନଙ୍କର ଶାରୀରିକ ବିଶେଷତ୍ୱ

ଦେହର କିଛି ଗଠନରୁ ବା ଆକୃତିରୁ ଜୀବମାନଙ୍କୁ ଜାଣିହୁଏ ବା ଚିହ୍ନି ହୁଏ । ଉଦାହରଣ ସ୍ୱରୂପ କାତିରୁ ମାଛମାନଙ୍କୁ, ଟାଣକାତିରୁ ସରୀସୃପମାନଙ୍କୁ, ପରରୁ ପକ୍ଷୀମାନଙ୍କୁ ଓ ଲୋମରୁ ସ୍ତନ୍ୟପାୟୀ ଜୀବମାନଙ୍କୁ ଚିହ୍ନିହୁଏ । ଏ ତ ସବୁ ହେଲା ଗୋଟିଏ ଗୋଟିଏ ବିଶେଷ ଆକୃତିଗତ ଲକ୍ଷଣ । ଏମିତି କିଛି କିଛି ଲକ୍ଷଣ ପ୍ରତ୍ୟେକ ପ୍ରାଣୀଠାରେ ଦେଖାଯାଏ । ଏବେ ଦେଖିବା ସାପମାନଙ୍କର ଶାରୀରିକ ବିଶେଷତ୍ୱ କ'ଣ ସବୁ ?

୧. ଦେହରେ କୌଣସି ଅବୟବ (ଗୋଡ଼ ଇତ୍ୟାଦି) ନ ଥାଇ ସରୁ ଓ ଲମ୍ବ ହୋଇଥାଏ ।

୨. ଆଖିରେ ଆଖିପତା ଓ ମୁଣ୍ଡରେ କାନ ନ ଥାଏ । ଆଖି ଦୁଇଟି ସ୍ୱଚ୍ଛ କାତିରେ ଆବୃତ୍ତ ହୋଇ ରହିଥାଏ ।

୩. ତଳପାଟି ତଳକୁ ଓ ଦୁଇକଡ଼କୁ ଗତି କରିବା ସହ ପାଟି ଭଲଭାବରେ ମେଲାଇ ହୁଏ । ଫଳରେ ବଡ଼ ବଡ଼ ଜୀବକୁ ଖାଇବା ବା ଗିଳିବା ସହଜରେ ସମ୍ଭବ ହୋଇଥାଏ ।

୪. ଜିଭଟି ଅଗକୁ ଦୁଇଫାଳିଆ ଯାହାକି ପାଟି ବନ୍ଦ ଥାଇ ମଧ୍ୟ ବାହାରକୁ ବାହାରି ଫକ୍ ଫକ୍ ହେଉଥାଏ ।

୫. ଦେହସାରା ଟାଣ କାତି ପୂରି ରହିଥାଏ । କାତିଗୁଡ଼ିକ ବେଶ୍ ଚିକ୍କଣ ।

୬. କାତି ମଝିରେ ମଝିରେ ଦେହରୁ ଛାଡ଼ିଥାଏ । କାତିଛାଡ଼ିବା ସାପମାନଙ୍କଠାରେ ଅତି ସାଧାରଣ କଥା ।

୭. ଆଖିଗୁଡ଼ିକ ଗତିହୀନ ଓ ଦେଖିବା ଶକ୍ତି ଖୁବ୍ ତୀକ୍ଷ୍ଣ ।

୮. ଅଜଗର ସାପକୁ ବାଦ୍‌ଦେଲେ ଅନ୍ୟ କୌଣସି ସାପ ଦେହ ମଧ୍ୟରେ ମେଖଳା ହାଡ଼ (Girdle Bones) ନଥାଏ ।

୯. ତଳ ଓ ଉପର ପାଟି ଭିତରେ ଛୋଟ ଛୋଟ ମୁନିଆ ଦାନ୍ତ ରହିଥାଏ । ବିଷାକ୍ତ ସାପମାନଙ୍କ ଉପର ପାଟି ଭିତରେ ଦୁଇଟି ବଡ଼ ବିଷଦାନ୍ତ ରହିଥାଏ ।

୧୦. ଖୁବ୍ କମ୍ କେତେକ ସାପଙ୍କୁ ବାଦ୍‌ଦେଲେ ଅନ୍ୟ ସବୁ ସାପ ଅଣ୍ଡା ଦେଇଥାଆନ୍ତି ।

ସରୀସୃପ ଜଗତରେ ଅନେକ ପ୍ରକାର ସରୀସୃପ ଦେଖାଯାଉଥିଲେ ବି ସାପମାନେ ସତରେ ଏକ ବିସ୍ମୟକର ସରୀସୃପ । କିଏ ଯେ ସେମାନଙ୍କୁ ନ ଡରେ ତାହା କହିହେବ ନାହିଁ । ହେଲେ ବି ତାକୁ ଯେତିକି ମାତ୍ରାରେ ଆମେ ସମସ୍ତେ ଡରୁ, ସାପମାନେ ସେତିକି ମାତ୍ରାରେ ଭୟଙ୍କର ନୁହେଁ । ଏବେ ଚାଲନ୍ତୁ ଦେଖିବା ଆମ ମନରେ କି କି ପ୍ରଶ୍ନ ଉଙ୍କିମାରେ ସେମାନଙ୍କ ବିଷୟରେ । ହଁ, ସେ ପ୍ରଶ୍ନଗୁଡ଼ିକର ଉତ୍ତର ସତରେ କ'ଣ ?



# ସାପମାନଙ୍କ ସମ୍ବନ୍ଧରେ ପ୍ରଶ୍ନ ଓ ଉତ୍ତର

୧. ସାପ କଅଣ ?

ସାପ ପ୍ରାଣୀଜଗତର ଏକ ପ୍ରକାର ପ୍ରାଣୀ । ଏମାନେ ଅନ୍ୟ ମେରୁଦଣ୍ଡୀ ପ୍ରାଣୀମାନଙ୍କ ପରି ଏକ ମେରୁଦଣ୍ଡୀ ପ୍ରାଣୀ । ତେବେ ଅନେକ ପ୍ରକାର ମେରୁଦଣ୍ଡୀ ପ୍ରାଣୀମାନଙ୍କ ମଧ୍ୟରେ ଏମାନେ ହେଉଛନ୍ତି ସରୀସୃପ । ଅର୍ଥାତ୍, ପେଟକୁ ଭୂଇଁ ଉପରେ ଭରା ଦେଇ ବା ଘୋଷାରି ଘୋଷାରି ଚାଲିବା ଏମାନଙ୍କ ସ୍ୱଭାବ । ଏମାନଙ୍କୁ ସାଧୁ ଭାଷାରେ ସର୍ପ ବୋଲି କୁହାଯାଏ । ଜୀବଜଗତର ଏମାନେ ଅସାଧାରଣ ପ୍ରାଣୀ ନୁହଁନ୍ତି; ଏମାନେ ଏକ ସାଧାରଣ ପ୍ରାଣୀ । ଏମାନଙ୍କୁ ଡରିବା ଠିକ୍ ନୁହେଁ । ଏମାନଙ୍କର ବିଶେଷତ୍ୱ ହେଉଛି ଯେ, ଏମାନେ ଡରକୁଳା ଜୀବ । ସାମାନ୍ୟ ଶବ୍ଦ ଜାଣିପାରିଲେ ଲୁଚିଯାଆନ୍ତି ବା ଆଖି ଆଗରୁ ଦୂରେଇଯାଆନ୍ତି । ପିଲାମାନେ ପିଲାବେଳେ ସାପ ନାଁ ଶୁଣିଲେ ଡରିଯାଆନ୍ତି । ତା' ନାଁ ଶୁଣିବା ମାତ୍ରେ ଆସ୍ତିକ ଆସ୍ତିକ ବୋଲି କେତେଥର କହିଥାଆନ୍ତି । ଏ କଥାର ଅର୍ଥ କିଛି ନଥାଏ ।

୨. ଭାରତରେ କେତେପ୍ରକାର ବିଷାକ୍ତ ଓ କେତେ ପ୍ରକାର ବିଷହୀନ ସାପ ଦେଖାଯାଆନ୍ତି ?

ପୃଥିବୀରେ ପ୍ରାୟ ୨୫୦୦ (ଦୁଇହଜାର ପାଞ୍ଚଶହ) ଜାତିର ସାପ ଅଛନ୍ତି । ଆଉ ଭାରତରେ ବାସ କରନ୍ତି ୨୧୬ (ଦୁଇଶହ ଷୋହଳ) ଜାତିର ସାପ । ଏମାନଙ୍କ ମଧ୍ୟରେ ମାତ୍ର ୫୨ (ବାଉନ) ଜାତିର ସାପ ବିଷାକ୍ତ ବା ବିଷଧର । ଅର୍ଥାତ୍ ବିଷହୀନ ସାପମାନଙ୍କ ସଂଖ୍ୟା ଅଧିକ । ଭାରତରେ ସମୁଦାୟ ୨୧୬ ପ୍ରକାର ବା ଜାତିର ସାପ ମଧ୍ୟରୁ ୪୫ଟି ପ୍ରଜାତି ଓ ୧୬୪ (ଏକଶହ ଚଉଷଠି)ଟି ଜାତିର ସାପ ବିଷହୀନ । ଆଉ ୧୬ଟି ପ୍ରଜାତି ଏବଂ ୫୨ (ବାଉନ)ଟି ଜାତିର ସାପ ବିଷାକ୍ତ । ଏହିପରି ସମୁଦାୟ ୬୧ (ଏକଷଠି)ଟି ପ୍ରଜାତିର ସାପ ମଧ୍ୟରୁ ୨୧୬ଟି ଜାତିର ସାପ ଦୃଷ୍ଟିଗୋଚର ହୁଅନ୍ତି । ତେବେ ସମୁଦାୟ ଏ ସାପମାନଙ୍କର ବଂଶ ବା ପରିବାର ସଂଖ୍ୟା ହେଉଛି ୧୧ (ଏଗାର) । ଏ ୧୧ଟି ବଂଶ ମଧ୍ୟରୁ ଆଠଟି ବିଷହୀନ ଓ ତିନୋଟି ବିଷାକ୍ତ ବଂଶ ଆମ ଦେଶରେ ଦେଖାଯାଆନ୍ତି ।

ପ୍ରଥମ ବଂଶଟି ନାଗ ଅର୍ଥାତ୍ ଗୋଖର (Cobra) ପରିବାରର ସାପ । ଏଥିରେ ଅଛନ୍ତି ୧୩ (ତେର) ପ୍ରକାରର ସାପ । ଦ୍ୱିତୀୟଟି ହେଉଛି ବୋଡ଼ା

ପରିବାର । ବୋଡ଼ା ପରିବାରର ସାପ ସଂଖ୍ୟା ୨୦ (କୋଡ଼ିଏ) ଏବଂ ତୃତୀୟ ପ୍ରକାର ହେଉଛନ୍ତି ସାମୁଦ୍ରିକ ବା ସମୁଦ୍ର ସାପ (Sea snake) । ଏମାନଙ୍କ ସଂଖ୍ୟା ହେଉଛି ୧୯ (ଉନେଇଶି) ।

ଆମ ଦେଶର ବିଷହୀନ ସାପଗୁଡ଼ିକ ହେଉଛନ୍ତି ତେଲିଆ ସାପ, ଭାରତୀୟ ଅଜଗର, ଦୋମୁଣ୍ଡିଆ, ଭାତୁଡ଼ିଆ ସାପ, ଢମଣା ସାପ, ଧାବକ ସାପ, ରାଜମୁକୁଟ ସାପ, ହୁଣ୍ଡାଳ ସାପ, ବ୍ରୋଞ୍ଜ ପିଠିଆ ସାପ, ଉଡ଼ନ୍ତା ସାପ ବା ବୃକ୍ଷ ସାପ, ସାଧାରଣ ହେଟା ସାପ, ପାଣି ଧଣ୍ଡ, ମାଟି ବିରାଡ଼ି ବା କାଉଚିଆ, ସବୁଜ ପିଠିଆ ସାପ, ବିଲେଇ ସାପ, କୁକୁର ମୁହାଁ ପାଣି ସାପ ଓ ଭାରତୀୟ ଅଣ୍ଡାଖିଆ ସାପ ଆଦି ।

ଭାରତରେ ଯେଉଁ ବିଷାକ୍ତ ସାପ ଦେଖାଯାଆନ୍ତି ସେମାନେ ହେଲେ ଚିତି, ରଣା, କଳାଚିତି, ପାତଳା ପୋହଳା ସାପ, ଗୋଖର ବା ନାଗ, ଅହିରାଜ, ସମୁଦ୍ର ସାପ, ଚନ୍ଦ୍ରବୋଡ଼ା, ଧୂଳିନାଗ, ହିମାଳୟ ଗର୍ତ୍ତମସ୍ତକୀ ବୋଡ଼ା ଓ କଟକଟିଆ ନାଗ ଆଦି । ତେବେ ସମୁଦାୟ ସାପମାନଙ୍କ ମଧ୍ୟରେ ବିଷହୀନ ସାପମାନଙ୍କ ସଂଖ୍ୟା ଅଧିକ ଓ ବିଷାକ୍ତ ସାପଗୁଡ଼ିକ ଖୁବ୍ ସୀମିତ ।

୩. ସାପମାନେ କେଉଁ ସ୍ଥାନରେ ଦେଖାଯାଆନ୍ତି ?

ସାପମାନେ ପୃଥିବୀର ପ୍ରାୟ ସବୁଠାରେ ଦେଖାଯାଆନ୍ତି । ତେବେ ପୃଥିବୀର ତିନୋଟି ସ୍ଥାନରେ ସେମାନେ ଦେଖାଯାଆନ୍ତି ନାହିଁ । ସେ ସ୍ଥାନଗୁଡ଼ିକ ହେଉଛି ସୁମେରୁ ଅଞ୍ଚଳ, ନିଉଜିଲାଣ୍ଡ ଓ ଆୟାରଲାଣ୍ଡ । ଆୟାର୍‌ଲାଣ୍ଡ ଓ ମାଡ଼ାଗାସ୍କାରରେ ବିଷାକ୍ତ ସାପ ଆଦୌ ଦେଖାଯାଆନ୍ତି ନାହିଁ । ସାପମାନଙ୍କର ପ୍ରଧାନ ବାସସ୍ଥାନ ହେଉଛି ଉଷ୍ମ ଜଳବାୟୁ ଓ ଗ୍ରୀଷ୍ମମଣ୍ଡଳୀୟ ଜଙ୍ଗଲିଆ ସ୍ଥାନ । ଓଡ଼ିଶାର ସବୁ ସ୍ଥାନରେ ପ୍ରାୟ ସାପ ଦେଖାଯାଆନ୍ତି । ଅହିରାଜ ସାପ ଓଡ଼ିଶାରେ ବେଶୀ ପରିମାଣରେ ଦେଖାଯାଆନ୍ତି ଭିତରକନିକା ଜଙ୍ଗଲରେ ।' ବୋଡ଼ା ସାପଗୁଡ଼ିକ ବଣବୁଦା ଓ ପାହାଡ଼ିଆ ଅଞ୍ଚଳରେ ରହିବାକୁ ଭଲପାଆନ୍ତି ଏବଂ ସେମାନଙ୍କର ରଙ୍ଗ ରହୁଥିବା ଜାଗାର ବା ପରିବେଶର ରଙ୍ଗ ସହିତ ମିଶିଯାଏ । ଗୋଖର ଭୂଇଁରେ ବାସକରେ ବୋଲି ତାର ବର୍ଣ୍ଣ ମାଟିଆ, ତମ୍ବାଳିଆ ବା କଳା । ଲାଉଡଙ୍କିଆ ସାପ ଗଛ ଲଟାରେ ବାସକରେ ବୋଲି ତା'ର ରଙ୍ଗ ସାଗୁଆ ଓ ଗଛର ରଙ୍ଗ ସହ ଏକାବେଳକେ ମିଶିଯାଏ । ଫଳରେ ସେମାନେ ଆତ୍ମଗୋପନ କରି ନିଜକୁ ଶତ୍ରୁମୁଖରୁ ରକ୍ଷା କରିବା ସହ ଆହାର ସଂଗ୍ରହ ପାଇଁ ଅନ୍ୟ ପ୍ରାଣୀମାନଙ୍କୁ ଆକ୍ରମଣ କରିବାକୁ ସମର୍ଥ ହୁଅନ୍ତି ।

(୪) ସାପ ପରି ଦେଖିବାକୁ ପ୍ରାଣୀମାନେ କ'ଣ ସାପ ?

ନାଁ ସାପ ପରି ଦେଖିବାକୁ ସବୁ ପ୍ରାଣୀମାନେ ଆଦୌ ସାପ ନୁହଁନ୍ତି । ସାପମାନେ ହେଲେ ସରୀସୃପ ଶ୍ରେଣୀର । ଏ ଶ୍ରେଣୀରେ ଆଉ ମୁଖ୍ୟତଃ ଦୁଇପ୍ରକାର ପ୍ରାଣୀ ଦେଖାଯାଆନ୍ତି । ଦେଖିବାକୁ ଠିକ୍ ସାପ ପରି । ସେମାନେ ହେଉଛନ୍ତି ଅଫିଓସଉରସ୍ *(Ophiosaurus)* ଓ ଅନ୍ଧପୋକ (Blind worm) । ଅଫିଓସଉରସ୍‌ର ସାଧାରଣ ନାମ କାଚ ସାପ (Glass Snake) । ସାପ ପରି ଏମାନେ ଏପାଖ ସେପାଖ ହୋଇ ଚାଲନ୍ତି । ଆଉ ମଧ୍ୟ ସାପମାନଙ୍କ ପରି ଏମାନଙ୍କର ଗୋଡ଼ ଆଦୌ ନଥାଏ । ସେଥିପାଇଁ ଏମାନଙ୍କୁ କୁହାଯାଏ ଅଙ୍ଗବିହୀନ ସରୀସୃପ (Limbless Lizard) । ଏମାନେ ଦେଖାଯାଆନ୍ତି ଦକ୍ଷିଣ ପୂର୍ବ ୟୁରୋପ, ଉତ୍ତର ଆମେରିକା, ଏସିଆ ଓ ହିମାଳୟର ପୂର୍ବ ଅଞ୍ଚଳରେ । ସାପ, କୀଟ ଓ ଛୋଟ ଛୋଟ ଝିଟିପିଟି ଏମାନଙ୍କର ଖାଦ୍ୟ । ଦେହ ସବୁଜ, ଧୂସରିଆ ବର୍ଣ୍ଣ ଓ ଦେହଟି ଲମ୍ବ ଲମ୍ବ ଗାର ଚିହ୍ନଯୁକ୍ତ । ଲାଞ୍ଜଟି ଭଙ୍ଗୁର । ଗତିଶୀଳ ଆଖିପତା ଓ କର୍ଣ୍ଣଗହ୍ବର ହିଁ ଏମାନଙ୍କୁ ସାପଠାରୁ ଅଲଗା କରିଥାଏ ।

ଅନ୍ଧପୋକର ଅନ୍ୟ ନାମ ଧୀରପୋକ (Slow Worm) । ଏମାନଙ୍କର ଆଖି ଉନ୍ନତ । କିନ୍ତୁ ଭୁଲରେ ଏପରି ଅନ୍ଧପୋକ ବୋଲି କୁହାଯାଇଛି । ଏମାନେ ଗାତରେ ରହନ୍ତି ଏବଂ ବିଶେଷତଃ ୟୁରୋପ, ପଶ୍ଚିମ ଏସିଆ ଓ ଆଲଜେରିଆଁରେ ଦେଖାଯାଆନ୍ତି । ସାପମାନଙ୍କ ପରି ଏମାନଙ୍କ ଶରୀର ଚିକ୍କଣ ଓ ଗୋଲାକାର କାତିରେ ପୂର୍ଣ୍ଣ । ମାତ୍ର ଗତିଶୀଳ ଆଖିପତା, କର୍ଣ୍ଣଗହ୍ବର ଓ ସାପପରି ମେଲା ହେଉନଥିବା ମୁହଁ ଯୋଗୁଁ ଏମାନେ ସାପଠାରୁ ଭିନ୍ନ । ଅଫିଓସଉରସ୍ ପରି ଏମାନଙ୍କ ଲାଞ୍ଜ ଭଙ୍ଗୁର । ମାଂସାସୀ ପ୍ରାଣୀ ଭାବରେ ଏମାନଙ୍କ ଖାଦ୍ୟ ହେଉଛି ଜିଆ, ଶମ୍ବୁକ ଓ କୀଟପତଙ୍ଗମାନଙ୍କ ଲାର୍ଭା ଆଦି ପ୍ରାଣୀ । ସରୀସୃପ ପ୍ରାଣୀଗୁଡ଼ିକ ମୁଖ୍ୟତଃ ଅଣ୍ଡା ଦେଇଥାଆନ୍ତି । ମାତ୍ର ଏମାନେ ସରୀସୃପ ହୋଇ ମଧ୍ୟ ଛୁଆ ପ୍ରସବୀ ।

ଏ ଦୁଇଟି ସରୀସୃପ ବ୍ୟତୀତ ତିନୋଟି ଉଭୟଚରୀ ମଧ୍ୟ ଦେଖିବାକୁ ସାପ ପରି । ତାହା ହେଉଛି—କଙ୍ଗୋଇଲ୍ (Congoeel), ଇକ୍‌ଥାଇଓଫିସ୍ *(Ichthyophis)* ଓ ୟୁରିଓଟିଫ୍‌ଲସ୍ *(Uroeotyphlus)* । ବିଜ୍ଞାନ ଭାଷାରେ କଙ୍ଗୋଇଲ୍‌ର ନାମ ଆମ୍ଫିଉମା *(Amphiuma)* । ଲମ୍ବ ପ୍ରାୟ ତିନିଫୁଟ । କାଦୁଆ ପାଣିରେ ଏମାନେ ରୁହନ୍ତି ଏବଂ ପ୍ରାୟତଃ ଉତ୍ତର ଆମେରିକା ଓ ଆମେରିକାର ଦକ୍ଷିଣାଂଶରେ ଦେଖାଯାଆନ୍ତି । ଏମାନଙ୍କର ଅଙ୍ଗଗୁଡ଼ିକ ଏତେ ଛୋଟ ଯେ ଜଣାପଡ଼େ ସତେଯେପରି ଗୋଡ଼ହାତ ନଥିଲା ପରି । ଏଗୁଡ଼ିକ ଯିବାଆସିବାରେ

ସାହାଯ୍ୟ କରି ନଥାଏ । ଏମାନେ ପାଣିରେ ଅଣ୍ଡା ଦିଅନ୍ତି ଓ ମାଈ ପ୍ରାଣୀ ଅଣ୍ଡାଗୁଡ଼ିକ ଚାରିପଟେ ଗୁଡ଼ାଇହୋଇ ଜଗି ରୁହେ ।



ସାପ ନୁହେଁ; ଅଙ୍ଗପ୍ରତ୍ୟଙ୍ଗବିହୀନ ଏକ ସରୀସୃପ (କାଚସାପ ବା ଅଫିଓସଉରସ୍)

ଇକ୍‌ଥାଇଓଫିସ୍ ହେଉଛି ଏକପ୍ରକାର ଗର୍ତ୍ତବାସୀ ଉଭୟଚରୀ । ଏମାନେ ଦେଖାଯାଆନ୍ତି ହିମାଳୟର ପାଦଦେଶଠାରୁ ଆରମ୍ଭ କରି ଶ୍ରୀଲଙ୍କା ଓ ଥାଇଲାଣ୍ଡ ପର୍ଯ୍ୟନ୍ତ ଅଞ୍ଚଳରେ । ଭାରତରେ ଏମାନଙ୍କ ଚରାଭୂଇଁ ହେଉଛି ମହୀଶୂର ଓ ମାଲବାର । ଶରୀରଟି ସାପ ପରି ଲମ୍ୱା । କାତି ପୂର୍ଣ୍ଣ ଶରୀରଟିରେ ଅସମାନ ଫୁସ୍‌ଫୁସ୍ ଥିବାରୁ ସାପମାନଙ୍କ ସହ ସାମଞ୍ଜସ୍ୟ ଜଣାପଡ଼େ । ଗୋଡ଼ ନଥିବାରୁ ଏମାନେ ଅଙ୍ଗବିହୀନ ଉଭୟଚରୀ (Limbless Amphibian) ଭାବରେ ଜଣାଶୁଣା । ଲାଞ୍ଜଟି ଖୁବ୍ ଛୋଟ । ବର୍ଣ୍ଣ ଗାଢ଼ ଧୂସର ବା ନୀଳ କଳା ମିଶା ରଙ୍ଗ । ତା' ସହ ଶରୀର ପାର୍ଶ୍ୱରେ ହଳଦିଆ ଚିହ୍ନ ମଧ ରହିଥାଏ । ମାଈ ଅଣ୍ଡା ଦେଇସାରି ଅଣ୍ଡା ଚାରିପଟେ ଗୁଡ଼େଇ ହୋଇ ଅଣ୍ଡାଗୁଡ଼ିକ ଫୁଟିବା ପର୍ଯ୍ୟନ୍ତ ଜଗିରୁହେ ।

ୟୁରିଓଟିଫ୍‌ଲସ୍ ଆଉ ଏକ ଅଙ୍ଗବିହୀନ ଉଭୟଚରୀ । ଏମାନେ ଦେଖାଯାଆନ୍ତି ମାଲବାର ଓ କୋଚିନ୍ ଅଞ୍ଚଳରେ । ଦେହଟି ସାପ ପରି ଲମ୍ୱା । ବର୍ଣ୍ଣରେ ଉପରଭାଗ କଳା ଏବଂ ପେଟପାଖ ଧଳା । ଛୋଟ ଛୋଟ କାତିରେ ଦେହଟି ପୂର୍ଣ୍ଣ । ମାତ୍ର କାତିଗୁଡ଼ିକ ଚର୍ମ ମଧରେ ଲାଖି ରହିଥାଏ । ଜଣାପଡ଼େ ନାହିଁ ଶରୀରରେ କାତି ଥିଲାପରି । ଏମାନେ ଗାତ ମଧରେ ରୁହନ୍ତି । ଇକ୍‌ଥାଇଓଫିସ୍ ଓ ୟୁରିଓଟିଫ୍‌ଲସ୍ ପରି ଗୋଡ଼ ନଥିବା ଉଭୟଚରୀ ପ୍ରାଣୀଙ୍କ ଜାତି ପ୍ରାୟ ୫୫ ।

**ସତରେ କେଉଁମାନେ ସାପ ନୁହଁନ୍ତି ?**

ସାପମାନଙ୍କର ଶାରୀରିକ ବୈଶିଷ୍ଟ୍ୟ ହେଉଛି–

୧। ଗୋଡ଼ବିହୀନ ଶରୀର
୨। କାତି ଦ୍ୱାରା ଆବୃତ୍ତ ଶରୀର
୩। ଚିକ୍‌କଣ ବା ମସୃଣ ଶରୀର
୪। ପାଟି ମଧସ୍ଥ ଦୁଇଫାଳିଆ ଜିଭ
୫। ପତାବିହୀନ ଆଖି
୬। ରନ୍ଧ୍ରବିହୀନ କର୍ଣ୍ଣ

ଏସବୁ ଲକ୍ଷଣଗୁଡ଼ିକ ସାପକୁ ଅନ୍ୟ ପ୍ରାଣୀମାନଙ୍କଠାରୁ ଚିହ୍ନିବା ଯଥେଷ୍ଟ ହେଲେ ହେଁ ବେଳେବେଳେ ସାଧାରଣ ଲୋକେ ଅନ୍ୟାନ୍ୟ କେତେକ ଜୀବଙ୍କୁ ସାପ ବୋଲି ଭୁଲ୍‌ରେ ଭାବିଥାଆନ୍ତି ।

କେତେଗୁଡ଼ିଏ ଝିଟିପିଟି ଜାତୀୟ ଜୀବ ଅଛନ୍ତି, ଯେଉଁମାନଙ୍କଠାରେ ସାପ ପରି କିଛି ଲକ୍ଷଣ ଦେଖାଯାଏ । ମାତ୍ର ସେମାନଙ୍କର ଚାରିଟି ଗୋଡ଼ ଥାଏ । ବିଭିନ୍ନ ପ୍ରକାର ଓ ରଙ୍ଗର ଚମ୍ପେଇ ନେଉଳ (Lurking Snake) ଏହିପରି ଜୀବ । ମାତ୍ର ଏମାନେ ସାପ ନୁହଁନ୍ତି ।

କେତେକ ଅବୟବ ବା ଅଙ୍ଗପ୍ରତ୍ୟଙ୍ଗବିହୀନ ଝିଟିପିଟି ଜାତୀୟ ପ୍ରାଣୀ ମଧ୍ୟ ଅଛନ୍ତି, ଯେଉଁମାନଙ୍କୁ ଅନେକ ସମୟରେ ଲୋକେ ସାପ ବୋଲି ଭ୍ରମ କରିଥାଆନ୍ତି । ମାତ୍ର ଖୁବ୍ ଭଲଭାବରେ ଲକ୍ଷ୍ୟ କଲେ ଦେଖାଯାଏ ଯେ ଏମାନଙ୍କର ଗତିଶୀଳ ଆଖିପତା ଓ ବାହ୍ୟ କର୍ଣ୍ଣରନ୍ଧ୍ର ଅଛି । ସାପମାନଙ୍କର ବାହ୍ୟ କର୍ଣ୍ଣରନ୍ଧ୍ର ଓ ଆଖିପତା ନାହିଁ । ଅବଶ୍ୟ ଆଖି ଉପରେ ଏକ ସ୍ୱଚ୍ଛ କାତି ଘୋଡ଼ାଇ ହୋଇ ରହିଥାଏ ।

କେତେକ ସ୍ଥଳଭାଗରେ ମାଟି ତଳେ ଓ କେତେକ ଜଳଚର ପ୍ରାଣୀ ଅଛନ୍ତି ଯେଉଁମାନଙ୍କୁ ସାପ ବୋଲି କେତେକ ଭାବିଥାଆନ୍ତି । ମାତ୍ର ଏମାନଙ୍କର ମଳମୂତ୍ର ଦ୍ୱାର ଦେହର ଶେଷରେ ଅବସ୍ଥିତ ଥିବାବେଳେ ସାପମାନଙ୍କର ମଳମୂତ୍ର ଦ୍ୱାର ଶରୀର ଓ ଲାଞ୍ଜର ମଝିରେ ଥାଏ । ଅର୍ଥାତ୍, ମଳମୂତ୍ର ଦ୍ୱାର ପରଠାରୁ ଏକ ଅଂଶ ଶରୀରରେ ଲମ୍ବି ରହିଥାଏ, ଯାହା ହେଉଛି ଲାଞ୍ଜ । ସାପପରି ଦେଖାଯାଉଥିବା ଭୂଜଳଚର ପ୍ରାଣୀଙ୍କ ଦେହରେ ଯେଉଁ କାତି ଦେଖାଯାଏ, ତାହା ସେମାନଙ୍କର ଚମ ଭିତରେ ଥାଏ । ସାପମାନଙ୍କ ପରି ଚମ ଉପରେ ନଥାଏ ।

କେତେକ ମାଛଙ୍କୁ ମଧ୍ୟ ଲୋକେ ସାପ ବୋଲି ଭାବି ନେଇଥାଆନ୍ତି । ମାଛମାନଙ୍କର ଫୁସ୍‌ଫୁସ୍ ନଥିବାବେଳେ ସାପମାନଙ୍କର ଶରୀର ମଧ୍ୟରେ ଫୁସ୍‌ଫୁସ୍ ରହିଥାଏ । ମାଛମାନେ ଗାଲି ସାହାଯ୍ୟରେ ଶ୍ୱାସକ୍ରିୟା କରନ୍ତି; ମାତ୍ର ସାପମାନେ ଫୁସ୍‌ଫୁସ୍ ସାହାଯ୍ୟରେ ଶ୍ୱାସକ୍ରିୟା ସମାହିତ କରନ୍ତି ।

ମାଟିତଳ ଜିଆକୁ ବେଳେ ବେଳେ କେହି କେହି ତେଲିଆ ସାପ ବୋଲି କହିଥାଆନ୍ତି । ମଜାକଥା ହେଉଛି, ଜିଆ ଅମେରୁଦଣ୍ଡୀ ପ୍ରାଣୀ । ସେମାନଙ୍କ ଦେହ କାତିହୀନ ଓ ମୁଦିପରି ବିଭକ୍ତ । ସେମାନଙ୍କର ମଧ୍ୟ ମଳଦ୍ୱାର ଶରୀରର ଶେଷ ଭାଗରେ ଅବସ୍ଥିତ । ସାପ କିନ୍ତୁ ମେରୁଦଣ୍ଡୀ, କାତିଯୁକ୍ତ ଓ ମଳମୂତ ଦ୍ୱାର ତାର ଦେହ ଓ ଲାଞ୍ଜ ମଝିରେ ପ୍ରାୟ ରହିଥାଏ ।

ପିଲା ବା ମଣିଷମାନଙ୍କ ଝାଡ଼ାରେ ବାହାରୁଥିବା କେଞ୍ଚୁଆକୁ କେତେକ ପେଟରୁ ସାପ ବାହାରିବା ବୋଲି କହିବାର ଶୁଣାଯାଏ । କେଞ୍ଚୁଆମାନେ ହେଉଛନ୍ତି କୃମି ଜାତୀୟ ଅମେରୁଦଣ୍ଡୀ ପ୍ରାଣୀ । ଅପରିଷ୍କାର ଖାଦ୍ୟ ଓ ପାନୀୟ ଯୋଗୁଁ ଏହା ଶରୀରରୁ ବାହାରିଥାଏ । ଏମାନେ କିନ୍ତୁ ସାପ ନୁହଁନ୍ତି ।

୫. ଗଠନ ବା ଆକାରରୁ ସାପମାନେ ବିଷାକ୍ତ କି ବିଷହୀନ ଜାଣିହେବ କି ?






ଶରୀରର ଆକୃତି ଓ କାତିରୁ ବିଷାକ୍ତ ଏବଂ ବିଷହୀନ ସାପର ଚିହ୍ନଟ



ଇଲାପ୍‌ସୋଇଡ଼ିଆ ନାମକ ସାପର ମୁଣ୍ଡର ଆକୃତି



ଏକପ୍ରକାର ନାଗସାପର ମୁଣ୍ଡର ପାର୍ଶ୍ୱ ଆକୃତି



ବିଭିନ୍ନ ଆକାରର କାତିଥିବା ଏକପ୍ରକାର ନାଗର ମୁଣ୍ଡ



ଡେଣ୍ଡ୍ରୋସ୍‌ପିସ୍ ନାମକ ସାପର ମୁଣ୍ଡ ଓ ବେକ ପାଖର କାତି


ସାପର ପିଠିପାଖ କାତି ଓ ସେଗୁଡ଼ିକ ଗଣିବାର ଉପାୟ


ପେଟ ପାଖର ଛୋଟ କାତି


ଅଣଓସାରିଆ ପେଟ କାତି


ପେଟ ପାଖର ଚଉଡ଼ା କାତି


ଏକପ୍ରକାର ସାପର ମୁଣ୍ଡଉପରର ବିଭିନ୍ନ ପ୍ରକାରର କାତି



ଲାଞ୍ଜକାଟିର ପ୍ରୟୋଗ



ରସେଲ ବୋଡ଼ାର ମୁଣ୍ଡଉପର କାତି

୬. ସାପମାନେ କ'ଣ ଖାଆନ୍ତି ?

ସାପମାନଙ୍କର ମୁଖ୍ୟ ଖାଦ୍ୟ ହେଉଛି ମୂଷା ଓ ବେଙ୍ଗ । ତେଣୁ ମୂଷା ଓ ବେଙ୍ଗ ଥିବା ସ୍ଥାନମାନଙ୍କରେ ସାପମାନେ ବେଶୀ ଦେଖାଯାଆନ୍ତି । ସେହି ହେତୁ ଧାନଜମି, ଖଳା ଓ ଶସ୍ୟ ଗଦାହୋଇଥିବା ସ୍ଥାନରେ ସାପମାନେ ବେଶୀ ଦେଖାଯାଆନ୍ତି । ଧାନ, ମୁଗ ଓ ବିରି ଆଦି ଅମଳ ବେଳେ ସାପ ଆମମାନଙ୍କ ଆଖିକୁ ବେଶୀ ଆସନ୍ତି ବିଲମାନଙ୍କରେ । କାରଣ ସେ ସମୟରେ ମୂଷା ଧାନ ଖାଇବାକୁ ଆସନ୍ତି । ଆଉ ସାପ ମୂଷାମାନଙ୍କୁ ଖାଇବାକୁ ଆସନ୍ତି ବୋଲି ବିଲମାନଙ୍କରେ ସାପ ବେଶୀ ଦେଖାଯାଆନ୍ତି । ଠେକୁଆ, ଗୁଣ୍ଡୁଚିମୂଷା, ଭୂଇଁଗୁଣ୍ଡୁଚି, ଏଣ୍ଡୁଅ, ତେଲୁଣି ପୋକ, କଙ୍କଡ଼ା ବିଛା, କୀଟ ବା ପୋକମାନଙ୍କୁ ବି ସାପମାନେ ଖାଆନ୍ତି । ଅହିରାଜ ପରି ସାପର ପ୍ରିୟ ଖାଦ୍ୟ ହେଉଛି ଅନ୍ୟ ସାପ । ସେଥିପାଇଁ ଅହିରାଜକୁ ସାପଖିଆ ସାପ ବୋଲି କୁହାଯାଏ ।

୭. ସାପ କ'ଣ ସତରେ ଭୟଙ୍କର ଜୀବ ?

ଏ ସଂସାରରେ ଯାହାର ଯେତେ ବେଶୀ ବଦନାମ ସେ ସେତେ ବେଶୀ ଜଣାଶୁଣା । ଜୀବଜଗତରେ ପ୍ରାଣୀମାନଙ୍କ ମଧ୍ୟରେ ସାପ ସେହିପରି ଏକ ପ୍ରାଣୀ । ଅନେକ ପ୍ରାଣୀ ଆମ ଚାରିପଟେ ଅଛନ୍ତି । ତା' ଭିତରୁ ସାପକୁ କିଏ ନ ଚିହ୍ନେ, ଏପରି ଲୋକ କେହି ନଥିବେ । ସାପ ନାମ ସହିତ ସବୁ ଅଶୁଭ ଜଡ଼ିତ । ବାଇବଲ୍ ଅନୁସାରେ ସୁଖୀ ମଣିଷକୁ ଦୁଃଖୀ କରେଇଛି ସାପ । ଏପରି ଅପଯଶିଆ ଓ ଭୟ ସୃଷ୍ଟିକାରୀ ପ୍ରାଣୀ ବୋଧହୁଏ ଅଦ୍ୱିତୀୟ ।

ସାପ ଆମ ପରିବେଶରେ ଦେଖାଯାଉଥିବା ଅନ୍ୟପ୍ରାଣୀମାନଙ୍କ ପରି ଏକ ପ୍ରାଣୀ ବା ଜୀବ । ଏମାନଙ୍କ ଆକାର ବେଶ୍ ଲମ୍ବା । ଭୂଇଁରେ ଯିବାବେଳେ ଏମାନେ ଏପାଖ ସେପାଖ ହୋଇ ଜୋର୍‌ରେ ଯିବାଆସିବା କରନ୍ତି । ତାଙ୍କୁ କୁଦି ପକାଇଲେ ନିଜକୁ ରକ୍ଷା କରିବାକୁ ସେମାନେ କାମୁଡ଼ି ପକାଇଥାଆନ୍ତି । ତେବେ ଆମ ଜୀବଜଗତରେ ଦେଖାଯାଉଥିବା ମେରୁଦଣ୍ଡୀ ଜୀବମାନଙ୍କ ମଧ୍ୟରେ ଏମାନେ ବେଶ୍ ଡରକୁଳା । 'ସାମାନ୍ୟ ଶବ୍ଦ ବାରିପାରିଲେ ଆଖିପିଛୁଳାକେ ଏମାନେ ଲୁଚି ଯାଆନ୍ତି । ଛପିଯିବାକୁ ଚେଷ୍ଟା କରନ୍ତି । ଏମାନେ କିନ୍ତୁ ବାସ୍ତବରେ ଭୟଙ୍କର ନୁହଁନ୍ତି । ଏମାନଙ୍କୁ ଆକ୍ରମଣ କଲେ ବା ବାଡ଼େଇଲେ ଅଥବା ଆଘାତ କଲେ ନଚେତ୍ କୁଦି ପକାଇଲେ ଏମାନେ କାମୁଡ଼ିପକାଇବାକୁ ଚେଷ୍ଟା କରନ୍ତି । ଅବଶ୍ୟ ଶତ୍ରୁମୁହଁରୁ ନିଜକୁ ରକ୍ଷା କରିବା ପାଇଁ ସାପମାନଙ୍କର କାମୁଡ଼ିବା ଏକମାତ୍ର ଉପାୟ । ଏମାନେ ଆଦୌ ଭୟଙ୍କର ନୁହଁନ୍ତି । ମନର ଭୟ ହିଁ ଏମାନଙ୍କୁ ଭୟଙ୍କର ରୂପ ଦେଇଛି ।

୮. ସାପମାନେ ଗୋଡ଼େଇ ଗୋଡ଼େଇ କାମୁଡ଼ନ୍ତି କି ?

ସାପମାନଙ୍କର ସ୍ୱଭାବ ଡରକୁଳା । ଶତ୍ରୁକୁ ଦେଖିଲେ ବା ଶତ୍ରୁ ଆସିବାର ସୂଚନା ପାଇଲେ ଅଥବା ଶତ୍ରୁର ଶବ୍ଦ ଜାଣିପାରିଲେ ଏମାନେ ଶତ୍ରୁମୁହଁରୁ ଦୂରେଇ ଯିବାକୁ ଚେଷ୍ଟା କରିଥାଆନ୍ତି । ଏହା ତ ଜୀବଜଗତର ସବୁ ପ୍ରାଣୀଙ୍କ ସ୍ୱଭାବ । ତେବେ ଏମାନେ ଗୋଡ଼େଇ ଗୋଡ଼େଇ କଦାପି କାମୁଡ଼ନ୍ତି ନାହିଁ । କୌଣସି ଶତ୍ରୁ ଆଘାତ କଲେ ବା ବାଡ଼େଇଲେ ସେମାନେ ତାହା ମନେରଖନ୍ତି ନାହିଁ । ଅନେକ ଲୋକ କହନ୍ତି ଯେ ସାପକୁ କିଏ ବାଡ଼େଇଲେ ସେମାନେ ତାହା ମନେରଖନ୍ତି । ମାତ୍ର ଏକଥା ଭୁଲ । ତେବେ ଗୋଟିଏ କଥା ଗୋଖର ସାପ ଅନ୍ୟସବୁ ସାପମାନଙ୍କ ମଧ୍ୟରେ ଟିକିଏ ରାଗୀ ସାପ । ସାମାନ୍ୟ ଆଘାତ ପାଇଲେ ଫଁ ଫଁ ହୋଇଥାଏ । ଶତ୍ରୁକୁ ଡରିଯାଇ ଅନ୍ୟ ସାପମାନଙ୍କ ପରି ସହଜରେ ଦୂରେଇ ଯାଇନଥାଏ ।

୯. ସାପ ଆମର ଉପକାରୀ ଜୀବ କି ?

ପରିବେଶର ପ୍ରତ୍ୟେକ ପ୍ରାଣୀ ଓ ଉଦ୍ଭିଦ ଆମ ପାଇଁ ଉପକାରୀ । ପ୍ରତ୍ୟେକର କିଛି ନା କିଛି ଉପକାର ରହିଛି । ବିଶେଷ କରି ପ୍ରତ୍ୟେକ ପ୍ରାଣୀ ଓ ଉଦ୍ଭିଦ ପରସ୍ପର ଉପରେ ନିର୍ଭରଶୀଳ । ପରିବେଶ ଅର୍ଥ ହେଉଛି ଆମ ଚାରିପଟେ ଥିବା ପ୍ରତ୍ୟେକ ଉଦ୍ଭିଦ ଓ ପ୍ରାଣୀ । ସାପ ବି ସେପରି ଆମ ଚାରିପଟର ଏକ ଜୀବ । ସେ ଆମର ଏକ ବେଶ୍ ଉପକାରୀ ଜୀବ । ଆମ ପରିବେଶରୁ

ମୂଷାମାନଙ୍କୁ ଖାଇ ସେମାନଙ୍କୁ ନିପାତ କରିବାରେ ସାପମାନେ ହିଁ ବେଶ୍ ଦକ୍ଷ । ମୂଷାମାନଙ୍କ ସଂଖ୍ୟା ଆମ ଦେଶରେ ଜନସଂଖ୍ୟାର ଛଅଗୁଣରୁ ବେଶ୍ ଅଧିକ । ତେଣୁ ଅନୁମାନ କରାଯାଇପାରେ ଯେ, ସତରେ ଆମ ଦେଶରେ କେତେ ସଂଖ୍ୟକ ମୂଷା ରହିଛନ୍ତି । ଏମାନଙ୍କୁ ଦମନ କରିବାରେ ସାପମାନେ ବେଶ୍ ସହାୟକ ହୋଇଥାଆନ୍ତି । ଆମର ଲକ୍ଷ୍ମୀ ଅର୍ଥାତ୍ ଧାନ, ମୁଗ ଓ ବିରି ଆଦି ଶସ୍ୟକୁ ବଞ୍ଚାଇବାରେ ଏମାନେ ସାହାଯ୍ୟ କରିଥାଆନ୍ତି । ସାପମାନଙ୍କର ପ୍ରିୟ ଖାଦ୍ୟ ମୂଷା ହୋଇଥିବାରୁ ଆମ ପରିବେଶର ଭାରସାମ୍ୟରେ ଏମାନଙ୍କର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ତେଣୁ ସାପ ଆମର ଯଥେଷ୍ଟ ଉପକାରୀ ।

୧୦. ସାପ ଆଖି ସାହାଯ୍ୟରେ କ'ଣ ଶୁଣେ ?

ସାହିତ୍ୟ, ସଂସ୍କୃତ ସାହିତ୍ୟ, ଗଦ୍ୟ ଓ ପଦ୍ୟଗୁଡ଼ିକରେ ସାପକୁ ଚକ୍ଷୁଶ୍ରବା ବୋଲି ବର୍ଣ୍ଣନା କରାଯାଇଛି । ଅର୍ଥାତ୍, ସାପ ଆଖି ସାହାଯ୍ୟରେ ଶୁଣେ ବୋଲି ଆଲୋଚନା କରାଯାଇଛି । ତେବେ ଏହା ସମ୍ପୂର୍ଣ୍ଣ ଭୁଲ କଥା । ଏହା ଆଖି ସାହାଯ୍ୟରେ ଶୁଣି ନଥାଏ । ଭୂଇଁର ଶବ୍ଦକୁ ସେ ବାରି ପାରିଥାଏ । ଆଖି ଦେଖିବାରେ ସହାୟକ ହୋଇଥାଏ ।

କାନପୁଡ଼ା ନଥାଇ ମଧ୍ୟ ସାପ ଶୁଣିପାରେ । ମୁଣ୍ଡ ଭିତରେ ତାର କାନ ଅବସ୍ଥିତ । ଅବଶ୍ୟ ବାୟୁରେ ବିକିରିତ ଶବ୍ଦ ସେମାନେ ଭଲରେ ଶୁଣିପାରନ୍ତି ନାହିଁ । ଭୂମି ଉପରେ ପାଦ ଶବ୍ଦ ସେମାନେ ଜାଣିପାରନ୍ତି । ସେମାନଙ୍କର ପଞ୍ଜରା ଅସ୍ଥି ବିସ୍ତୃତ ହୋଇ ପେଟର କାତିକୁ ପ୍ରାୟ ଲାଗି ରହିଥାଏ । ଭୂମି ଉପରେ କମ୍ପନ ହେଲେ ଏହି ଅସ୍ଥି ଓ ତା' ସହିତ ଲାଗି ରହିଥିବା ସ୍ନାୟୁ ସାହାଯ୍ୟରେ ତାହା ଶବ୍ଦ ଗ୍ରହଣ କରେ । କେଳାମାନେ ଡମ୍ବରୁ ଓ ବଂଶୀ ବଜାଇ ସାପକୁ ଖେଳାଇବା ଦେଖି ସାଧାରଣ ଲୋକେ ଭାବନ୍ତି ସାପ ଶୁଣିପାରେ ଓ ତାର କାନ ଅଛି । ମାତ୍ର କାନ ବା କାନପୁଡ଼ା ନ ଦେଖି ଦ୍ୱନ୍ଦ୍ୱରେ ପଡ଼ିଯାଆନ୍ତି । ଫଳରେ ସାପର ଶୁଣିବା ସମ୍ପର୍କରେ ନାନା କଥା କୁହାଯାଏ । ଏମିତି ଭୁଲରେ ଆଖିରେ ଶୁଣେ ବୋଲି ପୁରାଣରେ ଚକ୍ଷୁଶ୍ରବା ନାମକରଣ ହୋଇଯାଇଛି । ମାତ୍ର ଏହା ଭୁଲ କଥା । ପ୍ରକୃତରେ ସାପ ଆଖିରେ ଦେଖିପାରେ ଓ ଭୂଇଁରେ ପଦଶବ୍ଦ, ଠକ୍ ଠକ୍ ଶବ୍ଦ ଓ ସଙ୍ଗୀତର ଶବ୍ଦ ଅନୁଭବ କରିପାରେ ।

୧୧. ରାତିରେ କାହିଁକି ବାଡ଼ିକୁ ଠକ୍ ଠକ୍ କରି ଲୋକମାନେ ଯାଆନ୍ତି ?

ଗାଁଗହଳି ସ୍ଥାନରେ ରାତିରେ ଯିବା ଆସିବା କରିବାବେଳେ ଲୋକମାନେ ଗୋଟିଏ ବାଡ଼ି ବା ଠେଙ୍ଗାକୁ ଭୂଇଁ ଉପରେ ଠକ୍ ଠକ୍ କରି ବାଡ଼େଇ ଯାଇଥାଆନ୍ତି ।

ବୟସ୍କ ଲୋକମାନେ ସାନମାନଙ୍କୁ ଠେଙ୍ଗା ଧରି ରାତିରେ ଯିବାଆସିବା କରିବାକୁ କହିଥାଆନ୍ତି । ତାର କାରଣ ସାପଠାରୁ ନିଜକୁ ଦୂରେଇ ରଖିବା । ଅର୍ଥାତ୍, ସାପ ଭୂଇଁର ଠକ୍ ଠକ୍ ଶବ୍ଦ ଜାଣିପାରି ଦୂରେଇ ଯାଇଥାଏ । ସାପର ମଣିଷ ପରି ବାହ୍ୟକର୍ଣ୍ଣ ନଥାଏ । ସେମାନଙ୍କର କର୍ଣ୍ଣଗହ୍ୱର, ଶ୍ରୁତି ସ୍ରୋତ ନଳୀ ଓ ନିର୍ଦ୍ଦିଷ୍ଟ କର୍ଣ୍ଣପଟଳ ନାହିଁ । ଉପଯୁକ୍ତ କାନ ଭିତର ଅଂଶ ଓ ବାହ୍ୟକର୍ଣ୍ଣ ନଥିବାରୁ ସାପମାନେ ଶୁଣିପାରନ୍ତି ନାହିଁ ବୋଲି ବିଶ୍ୱାସ ରହିଛି । ମାତ୍ର ଭୂଇଁ ଉପରେ ବା ଭୂଇଁ ତଳେ ସାମାନ୍ୟ ଶବ୍ଦ କମ୍ପନ ହେଲେ ସାପମାନେ ଜାଣିପାରନ୍ତି । ଅନୁମାନ କରାଯାଏ ଯେ, ଶବ୍ଦତରଙ୍ଗ ଭୂମିରେ ବାଜିଲେ ସାପର ତଳ ପାଟି ତାହା ଗ୍ରହଣ କରିପାରେ ଓ ତା' ଫଳରେ ସେ ଶବ୍ଦ ଶୁଣିପାରେ । ସେଥିପାଇଁ ଗ୍ରାମାଞ୍ଚଳର ପଲ୍ଲୀବାସୀମାନେ ରାତିରେ ଗଲାବେଳେ ହାତରେ ଖଣ୍ଡେ ବାଉଁଶ ବା ଲାଠି ଠକ୍ ଠକ୍ କରିଯିବା ଏକ ସାଧାରଣ କଥା । ଏହାଦ୍ୱାରା ସାପ ଅନ୍ତତଃ ଆକ୍ରମଣ କରିପାରି ନଥାଏ । ଭୟରେ ସେଠାରୁ ଦୂରେଇ ଯାଇଥାଏ ।

୧୨. ସାପ ସାପୁଆ କେଳାର ବଂଶୀ ଶବ୍ଦ ଶୁଣି ଫଣା ହଲାଇବା କଥା ଠିକ୍ କି ?

କଥାରେ କୁହାଯାଏ ଯେ ସାପୁଆକେଳାର ବିନ୍ ଶବ୍ଦ ବା ବଂଶୀ ଶବ୍ଦ ଶୁଣି ସାପ ଫଣା ଏପଟ ସେପଟ କରି ହଲାଏ । ଲାଉତୁମ୍ବା ବଜାଇଲେ ସଙ୍ଗୀତ ଶୁଣି ସାପ ଆକୃଷ୍ଟ ହୁଅନ୍ତି ବୋଲି ଆଜି ବି ଲୋକଙ୍କ ବିଶ୍ୱାସ । ଏକଥା କିନ୍ତୁ ଠିକ୍ ନୁହେଁ । ସାପୁଆକେଳା ବଂଶୀ ବଜାଇ ସେ ବଂଶୀକୁ ଯେଉଁ ଦିଗକୁ ହଲାଏ ସାପ ସେହି ଅନୁସାରେ ମୁଣ୍ଡ ବା ଫଣାକୁ ଦୋହଲାଇଥାଏ । ମାତ ସେ ବଂଶୀ ଶବ୍ଦ ଶୁଣି ଦୋହଲାଇ ନ ଥାଏ ।



ସାପୁଆକେଳା ପେଡ଼ି ମଧ୍ୟରୁ କାଢ଼ି ଅହିରାଜ ଓ ନାଗସାପର ପ୍ରଦର୍ଶନ



ରାସ୍ତା ପାର୍ଶ୍ୱରେ ଏକ ସାପୁଆକେଳାର ନାଗସାପ ପ୍ରଦର୍ଶନ

୧୩. ସାପ ମୁଣ୍ଡରେ କ'ଣ ମଣି ଥାଏ ?

ଅଧିକାଂଶ ଲୋକଙ୍କ ମନରେ ବିଶ୍ୱାସ ଯେ, ସବୁ ସାପ ମୁଣ୍ଡରେ ଏକ ମୂଲ୍ୟବାନ ପଥର ବା ମଣି ଥାଏ । ଆଉ କେତେକଙ୍କ ମତରେ ମଣି କେବଳ ନାଗ ସାପ ମଥାରେ ଥାଏ । ଏମିତି ବି ଶୁଣାଯାଏ ଯେ କେତେକ ନିର୍ଦ୍ଦିଷ୍ଟ ସାପମାନଙ୍କ ମୁଣ୍ଡରେ ମଣିଥାଏ । ଏପରିକି ଦୂରଦର୍ଶନରେ ବି ସାପୁଆକେଳା ମୁଣ୍ଡକୁ କଣା କରି ମଣି ବା ପଥର କାଢ଼ିବାର ପ୍ରୟାସ କରିଥାଆନ୍ତି । ଦେଖାଇଥାଆନ୍ତି ଯେ ମଣି ବାହାରିଛି ବୋଲି । ତେବେ ଏହା ସମ୍ପୂର୍ଣ୍ଣ ଭୁଲ କଥା । ସାପମାନଙ୍କ ମୁଣ୍ଡରେ ମଣି ଆଦୌ ନ ଥାଏ । ସେଗୁଡ଼ିକ ଯେକୌଣସି ଛୋଟ ଛୋଟ ସ୍ଫଟିକାକାର ଜିନିଷ । ଏକଥା ବିଶ୍ୱାସ କରିବା ଆଦୌ ଠିକ୍ ନୁହେଁ । ଏମିତି ଭୁଲକଥା କହି ସାପୁଆ କେଳାମାନେ ରୋଜଗାର କରିବାର ଫନ୍ଦି କରିଥାଆନ୍ତି ।

୧୪. ସାପ ତାର ଜିଭ କାହିଁକି ସବୁବେଳେ ଫକ୍‌ଫକ୍ କରୁଥାଏ ?

ସାପ ଜିଭର ଯେଉଁ ଅଂଶ ପଦାକୁ ବାହାର କରେ, ତାହା ଦି'ଫାଳିଆ । ଜିଭର ଭିତ୍ତି ବା ମୂଳ ଦିଫାଳିଆ ନୁହେଁ । ଜିଭଟି ସାପର ଦି'ଫାଳିଆ ହୋଇଥିବାରୁ ସାପର ଅନ୍ୟ ନାମ 'ଅଧିଜିହ୍ୱା' । ପୁରାଣ ମତରେ ସାପ କୁଶ ଉପରେ ରଖାଯାଇଥିବା ଅମୃତକୁ ଚାଟିଲାବେଳେ କୁଶ ଦାଢ଼ରେ ତାର ଜିଭ କଟିଯାଇ ଦି'ଫାଳ ହୋଇଗଲା । ସେହିଦିନରୁ ସେମାନଙ୍କ ବଂଶଧରମାନଙ୍କ

ଜିଭ ଦୁଇଫାଳିଆ । ଏହା ପଛରେ ଅବଶ୍ୟ କୌଣସି ବୈଜ୍ଞାନିକ ଭିତ୍ତି ନାହିଁ । ତାହା କହିବା ବାହୁଲ୍ୟ ମାତ୍ର । ସାପ ଫଣା ଟେକି ଜିଭକୁ ବାରମ୍ବାର ବାହାର କରିବାର ଦେଖି ଲୋକେ ଭାବନ୍ତି ସାପ ସେହି ଜିଭ ବାଟେ ବିଷ ନିକ୍ଷେପ କରେ ବୋଲି; କିନ୍ତୁ ଜିଭ ସହିତ ବିଷ ନିକ୍ଷେପର କୌଣସି ସମ୍ପର୍କ ନାହିଁ ।



ଚଉଡ଼ା ଫଣାଯୁକ୍ତ କ୦ଉ ଚିହ୍ନଥାଇ ନାଗସାପ



ସାପର ଜିଭର ଆକୃତି ଓ ତାହା ପାଟିର ଅଗ୍ରଭାଗରେ ଲାଗି ରହିଥାଏ

ପ୍ରାଣୀଜଗତରେ ସାପ କାହିଁକି ଆଉ କେତେକ ସରୀସୃପ ମଧ୍ୟ ଜିଭ ଫକ୍‌ଫକ୍ କରୁଥିବାର ଦେଖାଯାଏ । ସାପ ପରି ଗୋଧି ଜିଭ ଏପରି ଫକ୍‌ଫକ୍ କରି ବାହାରକୁ କାଢୁଥିବାର ନଜରକୁ ଆସେ । ପାଟି ବନ୍ଦ ଥିବାବେଳେ ପାଟିର ଦୁଇଯୋଡ଼ଟେ ଥିବା ଫାଙ୍କ ମଧ୍ୟଦେଇ ଜିଭ ପଦାକୁ ବାହାରିପାରେ । ଆଗକୁ ଯିବା ପୂର୍ବରୁ ସାମ୍ନାରେ କୌଣସି ବିପଦ ଅଛି କି ନାହିଁ, ତାହା ସାପ ଏହି ଜିଭ

ଦ୍ୱାରା ବାରିପାରେ । ଏହା ତାର ଖାଦ୍ୟ ଖାଇବାରେ ସାହାଯ୍ୟ କରିନଥାଏ । ଏହା ମୁଖ୍ୟତଃ ଗନ୍ଧ ଗ୍ରହଣ କରିବାରେ ସାହାଯ୍ୟ କରେ । ଏପରିକି ଜିଭ ଦ୍ୱାରା ପାଖରେ ଥିବା ତାର ଖାଦ୍ୟ ଅର୍ଥାତ୍ ବେଙ୍ଗ ବା ମୂଷାକୁ ଜାଣିପାରେ ।

**୧୫. ସାପମାନଙ୍କ ଦେହରେ ବା ମୁଣ୍ଡରେ କ'ଣ ଲୋମ ଥାଏ ?**

ସାପମାନେ ହେଉଛି ସରୀସୃପ । ସରୀସୃପ ପ୍ରାଣୀମାନଙ୍କର ଶାରୀରିକ ବୈଶିଷ୍ଟ୍ୟ ହେଉଛି ଶରୀରର କାତି । ଏ କାତିଗୁଡ଼ିକ ଅପେକ୍ଷାକୃତ ମାଛକାତି ଠାରୁ ଖୁବ୍ ଟାଣ । ଦେହସାରା ଏମାନଙ୍କର କାତି ଦ୍ୱାରା ଆବୃତ୍ତ । ଲୋମର ପ୍ରଶ୍ନ ନ ଥାଏ ଏମାନଙ୍କ ଦେହ ଉପରେ । ସାଧାରଣ ଲୋକଙ୍କ ଧାରଣା ଯେ ବୁଢ଼ା ସାପମାନଙ୍କର ଧଳା ଲୋମ ଥାଏ ବୋଲି । ମାତ୍ର ଏହା ଭ୍ରାନ୍ତ ଧାରଣା । କେତେକ ସାପୁଆ କେଳା ସାପମାନଙ୍କ ମୁଣ୍ଡରେ ଧଳା ବା କଳା କେଶ ଲଗାଇ ପଇସା ରୋଜଗାର କରିବାର ପନ୍ଥା କରିଥାଆନ୍ତି । ବାସ୍ତବରେ କୌଣସି ସାପ ଦେହରେ ବା ମୁଣ୍ଡରେ କେଶ ନ ଥାଏ ।

**୧୬. ସାପ ଦେହରୁ କ'ଣ କାତି ଛାଡ଼େ ?**

ସରୀସୃପ ପ୍ରାଣୀମାନଙ୍କ ଶାରୀରିକ ବୈଶିଷ୍ଟ୍ୟ ହେଉଛି କାତିଦ୍ୱାରା ଆବୃତ୍ତ ଶରୀର । ସରୀସୃପ ଶ୍ରେଣୀର ଅନ୍ତର୍ଗତ ହୋଇଥିବାରୁ ସାପମାନଙ୍କ ଶରୀର କାତି ଦ୍ୱାରା ଘୋଡ଼େଇ ହୋଇ ରହିଥାଏ । କାତି ଉପରେ ପତଳା ଚମର ଏକ ଆସ୍ତରଣ ଥାଏ । ଏ ଆସ୍ତରଣ ନିୟମିତ ଭାବରେ ଛାଡ଼ିଥାଏ । ଏହାକୁ କାତି ଛାଡ଼ିବା କୁହନ୍ତି । ଚମ ଛାଡ଼ିବା ପୂର୍ବରୁ ସାପର ବର୍ଣ୍ଣ ଧୂଆଁପରି ଧଳାଳିଆ ହୋଇଯାଏ । ଦେହରୁ ଚମଡ଼ା ଛାଡ଼ିଲେ ଭିତରପଟ ବାହାରକୁ ଆସିଲା ପରି ସାପ ଚମ ଛାଡ଼େ । ଚମ ଛାଡ଼ିବା ସମୟରେ ଏହାର ଗତି ଧୀର ହୋଇଯାଏ । ଆଉ ଆଖି ଉପର ଅସ୍ୱଚ୍ଛ ହୋଇଯିବାରୁ ସେ ଦୂରଜିନିଷ ଭଲଭାବରେ ଦେଖିପାରେ ନାହିଁ । ଶୀତଋତୁ ତୁଳନାରେ ଗ୍ରୀଷ୍ମଋତୁରେ ସାପର ଚଞ୍ଚଳ କାତି ଛାଡ଼େ । ବେଳେବେଳେ ବା ଅଧିକାଂଶ ସମୟରେ ପଡ଼ିଆରେ ଗଛବୁଦାରେ ବା ଆବୁଡ଼ାଖାବୁଡ଼ା ସ୍ଥାନରେ ସମ୍ପୂର୍ଣ୍ଣ ଲମ୍ୱକାତି ପଡ଼ିଥିବାର ଦେଖାଯାଏ । ଅର୍ଥାତ୍ କାତି ଛାଡ଼ିଲେ ପୁରାପୁରି ଦେହର କାତି ଛାଡ଼ିଥାଏ ।

**୧୭. ସବୁ ସାପମାନଙ୍କ କାତି ଚିକ୍କଣ ରହିଥାଏ କି ?**

ପ୍ରାୟ ଅଧିକାଂଶ ସାପଙ୍କ କାତି ମସୃଣ ବା ଚିକ୍କଣ ଏବଂ ଚକ୍‌ଚକ୍ କରୁଥାଏ । ତେଣୁ ସାପଗୁଡ଼ିକୁ କେଳା ବା ଯେକୌଣସି ବ୍ୟକ୍ତି ଧରିଲେ

ସେମାନେ ସହଜରେ ଖସିଯାଆନ୍ତି । କିନ୍ତୁ ଅଳ୍ପ କେତୋଟି ସାପଙ୍କ ଦେହରେ ଥିବା କାତି ଆଦୌ ଚିକ୍କଣ ନୁହେଁ । ସେ ସାପଗୁଡ଼ିକ ହେଉଛନ୍ତି–କୁଦାମରା ବୋଡ଼ା (Jumping Viper) ଓ ବୁସ୍‌ମାଷ୍ଟର (Bushmaster) । ଏମାନଙ୍କ କାତିଗୁଡ଼ିକ ମଇଳା ଓ ଖଦଖଦଡ଼ିଆ । ଆଦୌ ଚିକ୍କଣ ନୁହେଁ । ସାପମାନଙ୍କ ମଧ୍ୟରେ କାତି ଗଠନରେ ଏ ଗୋଟିଏ ବ୍ୟତିକ୍ରମ । କୁଦାମରା ବୋଡ଼ାକୁ ବିଜ୍ଞାନ ଭାଷାରେ କୁହାଯାଏ *Bothrops nummifera* । ଆକାର ଏକ ମିଟରରୁ କମ୍ । ଏମାନଙ୍କର ବସତି ହେଉଛି କେନ୍ଦ୍ର ଆମେରିକା । ଏ ସାପ ରାଗିଗଲେ ପ୍ରାୟ ଦୁଇଫୁଟ ଆଗକୁ ଝୁଙ୍କିଯାଇ ଫଣା ମାରେ । ଏହା କୁଦାମାରି କାମୁଡ଼େ ଓ ଏହାର କାମୁଡ଼ା ମଧ୍ୟ ବେଶ୍ ଭୟଙ୍କର ।

## ୧୮. ସାପ ଦେହରୁ କ'ଣ ଗନ୍ଧ ବାହାରେ ?

କେତେକ ସାପଙ୍କ ଦେହ ଗନ୍ଧାଏ । ଉଦାହରଣ ସ୍ୱରୂପ ଢମଣା ସାପ । ଢମଣା ଏକପ୍ରକାର ଦୁର୍ଗନ୍ଧମୟ ରସ ନିର୍ଗତ କରେ । ତେଣୁ ଏ ସାପକୁ ହାତରେ ଧରିଲେ ହାତ ଗନ୍ଧାଏ । ବେଳେ ବେଳେ ଚିତିସାପର ପାୟୁଗ୍ରନ୍ଥି (ମଳଦ୍ୱାର ପାଖ ଗ୍ରନ୍ଥି)ରୁ ଏକ ପ୍ରକାର କଳାରସ ବାହାରିଥାଏ । ଏ ରସ ଗନ୍ଧଯୁକ୍ତ । ଅନେକ ମାଈ ସାପଙ୍କର ପଛଭାଗର ପାୟୁଗ୍ରନ୍ଥିରୁ ରସ କ୍ଷରିତ ହୋଇଥାଏ । ଅନୁମାନ କରାଯାଏ ଯେ, ଏହି ଗନ୍ଧ ଯୋଗୁଁ କେତେକ ନିର୍ଦ୍ଦିଷ୍ଟ ମାସରେ ଅନେକ ଅଣ୍ଡିରା ସାପ ମାଈ ସାପମାନଙ୍କ ପ୍ରତି ଆକୃଷ୍ଟ ହୋଇଥାଆନ୍ତି ।

## ୧୯. ଫଁ ଫଁ ଶବ୍ଦରେ ସାପ କ'ଣ ଲୋକଙ୍କୁ ଟାଣି ନେଇଯାଏ ?

ସାପମାନଙ୍କର ବିଶେଷତ୍ୱ ହେଉଛି ଫଁ ଫଁ କରିବା । ଏମାନଙ୍କର ଶ୍ୱାସତନ୍ତ୍ର ହେଉଛି ଗୋଟିଏ ମାତ୍ର ଫୁସ୍‌ଫୁସ୍ । ଏ ଫୁସ୍‌ଫୁସ୍ ବେଶ୍ ଲମ୍ବ । ବାୟୁ ବାହ୍ୟ ନାସାରନ୍ଧ୍ର ଦେଇ ଫୁସ୍‌ଫୁସ୍ ମଧ୍ୟକୁ ପବେଶ କରେ । ଫୁସ୍‌ଫୁସ୍‌ରୁ ମଧ୍ୟ ବାୟୁ ନାସାରନ୍ଧ୍ର ଦେଇ ବାହାରକୁ ଆସିଥାଏ । ଏହା ନିୟମିତ ଭାବରେ ଏପରି ବାୟୁ ତ୍ୟାଗ କରିଥାଏ ଯେ ଫଁ ଫଁ ଶବ୍ଦ ଖୁବ୍ ଜୋରରେ ହୋଇଥାଏ । ତେବେ ଏ ଶବ୍ଦ ଜୋର୍‌ରେ ହେବାର କାରଣ କ୍ଷୁଦ୍ର ନାସାରନ୍ଧ୍ର ଦେଇ ପବନ ଖୁବ୍ ଜୋର୍‌ରେ ବାହାରକୁ ବାହାରିବାରୁ । ଜୋର୍‌ରେ ଏପରି ହେବା ଯୋଗୁଁ ଲୋକମାନଙ୍କର ଧାରଣା ଏହାଦ୍ୱାରା ଶତ୍ରୁକୁ ସେ ଟାଣି ନେଇଯିବ ବୋଲି । ମାତ୍ର ଏହା ଠିକ୍ ନୁହେଁ କି ସମ୍ଭବ ନୁହେଁ ।

ସାପମାନେ ପ୍ରଶ୍ୱାସରେ (ନାକ ମଧ୍ୟରେ ପବନ ଫୁସ୍‌ଫୁସ୍ ଭିତରକୁ ନେବା) ଅଧିକ ପବନ ନେଇ ଫୁସ୍‌ଫୁସ୍ ମଧ୍ୟରେ ରଖନ୍ତି । ତାପରେ ନାକବାଟେ ଖୁବ୍

ଜୋର୍‌ରେ ଛାଡ଼ନ୍ତି । ଅର୍ଥାତ୍ ଫଁ ଫଁ ଗର୍ଜନ ଶବ୍ଦ କଲାବେଳେ ଯେଉଁ ଶବ୍ଦ ସୃଷ୍ଟି ହୋଇଥାଏ, ତାହା ତାର ନାକପୁଡ଼ା ଦୁଇଟି ମଧ୍ୟଦେଇ ପବନ ବାହାରିବା ହେତୁ ଘଟିଥାଏ । ଭାରତରେ ଯେତେ ସାପ ଅଛନ୍ତି, ସେମାନଙ୍କ ମଧ୍ୟରେ ଚନ୍ଦ୍ରବୋଡ଼ା ସାପର ଗର୍ଜନ ସବୁଠାରୁ ବେଶୀ ପ୍ରଚଣ୍ଡ । ସାପକୁ ଲୋକମାନେ, ପିଲାମାନେ ଓ ସମସ୍ତେ ଡରିବାର କାରଣ ହିଁ ତାଙ୍କର ଫଁ ଫଁ ଶବ୍ଦ (Hissing Sound) ।

୨୦. ସବୁ ସାପ ପାଟିରେ କ'ଣ ବିଷଦାନ୍ତ ଥାଏ ?

ସବୁ ସାପ ପାଟିରେ ବିଷଦାନ୍ତ ନ ଥାଏ । ବିଷଦାନ୍ତ କେବଳ ବିଷାକ୍ତ ସାପମାନଙ୍କର ଉପର ପାଟିରେ ଥାଏ । ତଳପାଟିରେ ବିଷଦାନ୍ତ ଆଦୌ ନ ଥାଏ । ଏ ବିଷଦାନ୍ତ ସାମନାକୁ ଉପର ପାଟିରେ ପ୍ରତ୍ୟେକ କଡ଼ରେ ଗୋଟିଏ କରି ଦୁଇ କଡ଼ରେ ଦୁଇଟି ରହିଥାଏ । ତଳପାଟିରେ ବିଷଦାନ୍ତ ନ ଥାଏ । ଏ ବିଷଦାନ୍ତ ଦୁଇଟି ଅନ୍ୟ ଦାନ୍ତମାନଙ୍କଠାରୁ ବେଶ୍ ବଡ଼ । ଖୁବ୍ ମୁନିଆ ମଧ୍ୟ । ଠିକ୍ ଇଞ୍ଜେକ୍‌ସନ୍ ଛୁଞ୍ଚି ପରି । ବିଷଦାନ୍ତ ମଝିରେ ରନ୍ଧ୍ର ଥାଏ ବା ବିଷଦାନ୍ତର ଉପର ଭାଗରେ କେନାଲ ପରି ନଳା ଆକାର ରହିଥାଏ । ସାପ କାମୁଡ଼ିବା ବେଳେ ଏହି ନଳା ବା ରନ୍ଧ୍ରଦେଇ ଶତ୍ରୁର ଶରୀର ମଧ୍ୟକୁ ବିଷ ଚାଲିଯାଇଥାଏ ।




ବିଷହୀନ ସାପର ଉପର ପାଟିରେ ସଜ୍ଜିତ ଦାନ୍ତଗୁଡ଼ିକ

ବିଷଦାନ୍ତ ସଂଖ୍ୟା କେବଳ ଦୁଇଟି । ତାହା ମଧ୍ୟ ଉପର ପାଟିରେ ଥାଏ । ବିଷଦାନ୍ତ ଭାଙ୍ଗିଦେଲେ ପୁଣି ସେ ବିଷଦାନ୍ତ ମୂଳରୁ ବିଷଦାନ୍ତ ଗଜୁରିଉଠେ । କାରଣ ବିଷଦାନ୍ତ ମୂଳରେ ବି କ୍ଷୁଦ୍ର ବିଷଦାନ୍ତ ରହିଥାଏ । ଭାଙ୍ଗିଗଲେ ବା ନଷ୍ଟ ହୋଇଗଲେ ମୂଳ ବିଷଦାନ୍ତ ପାଖରୁ ନୂଆ ବିଷଦାନ୍ତ ବାହାରିଥାଏ । ବିଷଦାନ୍ତ ଛଡ଼ା ସାପର ଦୁଇପାଟିରେ ଏବଂ ତାଳୁରେ ତୀକ୍ଷ୍ଣ ଓ ବକ୍ରଦାନ୍ତ ରହିଥାଏ ।

ସାପୁଆ କେଳା ବିଷଧର ସାପମାନଙ୍କୁ ଦେଖାଇବା ବେଳେ ସାପର ବିଷଦାନ୍ତ ଭାଙ୍ଗି ଖେଳାଇଥାଆନ୍ତି । ମାତ୍ର ବିଷଦାନ୍ତ ପୁଣି ଗଜୁରି ଉଠିଥାଏ ।



ବିଷାକ୍ତ ଦାନ୍ତକୁ ମଝିରୁ କାଟିଦେଲେ ଏପରି ଦେଖାଯାଏ



ବିଷାକ୍ତ ସାପର ବିଷଥଳୀ, ବିଷନଳୀ ଓ ବିଷଦାନ୍ତ

**୨୧. ବିଷଦାନ୍ତ କାଟିଦେଲେ ସାପ କ'ଣ ବିଷହୀନ ହୋଇଯାଏ ?**

କେଳାମାନେ ଲୋକମାନଙ୍କୁ ସାପଖେଳ ଦେଖାଇବା ବେଳେ କହିଥାଆନ୍ତି ଯେ ବିଷାକ୍ତ ସାପ ପାଟିରୁ ସେମାନେ ବିଷଦାନ୍ତ କାଟି ଦେଇଛନ୍ତି ବୋଲି । ଅବଶ୍ୟ ବିଷଦାନ୍ତ କାଟିଦେଲେ ସେମାନେ ଆଉ ବିଷ ପ୍ରୟୋଗ କରିବା ସମ୍ଭବ ହୁଏନାହିଁ । ମାତ୍ର ବିଷଦାନ୍ତ ଭାଙ୍ଗିଗଲେ ଗଜା ବିଷଦାନ୍ତ ଉଠିବାକୁ ତିନିରୁ ଛଅ ସପ୍ତାହ ଲାଗିଥାଏ । ବିଷଦାନ୍ତ ମୂଳରୁ ଗଜା ବିଷଦାନ୍ତ ଗଜୁରି ଉଠିଥାଏ । ତେବେ ବିଷଧର ସାପ ଦାନ୍ତ କାଟିଦେଲେ ସେ ବିଷହୀନ ହୋଇନଥାଏ । ତା' ଦେହରେ ସେମିତି ବିଷ ରହିଥାଏ । କାରଣ ବିଷ ହିଁ ବିଷଗ୍ରନ୍ଥିରେ ସଞ୍ଚିତ ହୋଇ ରହିଥାଏ ।

**୨୨. ବିଷାକ୍ତ ସାପର ଏତେ ବଡ଼ ବିଷଦାନ୍ତ ଦୁଇଟି ପାଟି ଭିତରେ କେମିତି ଥାଏ ?**





ବିଷାକ୍ତ ସାପର ଦାନ୍ତ ସହ ମୁଣ୍ଡରେ ଥିବା ହାଡ଼ଗୁଡ଼ିକ

ବିଷଦାନ୍ତ ଦୁଇଟି ଅନ୍ୟ ଦାନ୍ତଗୁଡ଼ିକ ଅପେକ୍ଷା ଖୁବ୍ ବଡ଼ ଓ ଚଳନଶୀଳ । ଅର୍ଥାଦ୍ ପାଟିକୁ ମେଲାଇ ବିଷଦାନ୍ତକୁ ହଲାଇଲେ ତାହା ଏପାଖ ସେପାଖ ହୁଏ । ଲମ୍ବା ହେତୁ ପାଟି ବନ୍ଦ ଥିବାବେଳେ ତାହା ଲମ୍ବି ସିଧା ହୋଇ ରହିନଥାଏ । ଅର୍ଥାଦ୍ ବ୍ୟବହାର ହେଉନଥିବା ବେଳେ ବିଷଦାନ୍ତ ଦୁଇଟି ପାଟି ଭିତରେ ହନୁ କଡ଼ରେ ଭାଙ୍ଗିହୋଇ ରହିଥାଏ । ଫଣାଟେକି କାମୁଡ଼ିବାକୁ ଚେଷ୍ଟା କଲାବେଳେ ଭାଙ୍ଗିହୋଇ ରହିଥିବା ଦାନ୍ତ ଦୁଇଟି ସିଧା ହୋଇଯାଏ ଓ ଟାଣ ହୋଇଯିବା ଫଳରେ ଶତ୍ରୁ ଦେହକୁ ଫୋଡ଼ିବା ସମ୍ଭବ ହୋଇଥାଏ । ତେବେ ବୋଡ଼ାସାପର ବିଷଦାନ୍ତର ଲମ୍ବ ପ୍ରାୟ ଦଶ ମିଲିମିଟର ବା ଏକ ସେଣ୍ଟିମିଟର । ତେବେ ସବୁ ବିଷାକ୍ତ ସାପର ବିଷଦାନ୍ତଗୁଡ଼ିକ ଚଳନଶୀଳ ନୁହେଁ । କେତେକଙ୍କର ସ୍ଥିର ଭାବରେ ପାଟି ଭିତରେ ରହିଥାଏ ।



ବୋଡ଼ା ସାପର ଚଳନଶୀଳ ବିଷଦାନ୍ତ ସହ ଖପୁରୀ



ଗର୍ତ୍ତମସ୍ତକୀ ବୋଡ଼ାର ଚଳନଶୀଳ ବିଷଦାନ୍ତ ଓ ମୁଣ୍ଡହାଡ଼

ସବୁ ବିଷଧର ସାପମାନଙ୍କର ବିଷଦାନ୍ତ ସମାନ ଆକାରର ନୁହେଁ । ଏସିଆ, ଭାରତ, ଦକ୍ଷିଣ ଚୀନ୍, ସୁମାତ୍ରା ଓ ଜାଭାରେ ଦେଖାଯାଉଥିବା ପାମା (Pama) ବା ରଣା (Banded Krait ବା *Bungarus fasciatus*)ର କାମୁଡ଼ା ବେଶ୍ ମାରାତ୍ମକ । ରଣା, ନାଗ, ମାମ୍ବା ଓ ପ୍ରବାଳ ସାପ ଆଦି ସାପମାନଙ୍କର ବିଷଦାନ୍ତ ଅପେକ୍ଷାକୃତ ଛୋଟ । ଏମାନେ ସବୁ ଗୋଟିଏ ପରିବାର (Elapidae)ର ସାପ । ନାଗ ଓ ରଣା ସାପ ଚୋଟ ମାରିବାବେଳେ ଲଗାତାର ଦୁଇ ତିନିଥର ଦଂଶନ କରନ୍ତି । ଫଳରେ କ୍ଷତ ସ୍ଥାନରେ ଅଧିକ ପରିମାଣର ବିଷ ଶତ୍ରୁ ଶରୀରକୁ ଆସିଥାଏ । ଏସବୁ ସାପମାନଙ୍କର ବିଷଦାନ୍ତ ଅପେକ୍ଷାକୃତ ଛୋଟ ସହ ଉପର ପାଟିରେ ଶକ୍ତ ଭାବରେ ସିଧା ରହିଥାଏ । ଭାଙ୍ଗିକରି ନ ଥାଏ । ସମୁଦ୍ର ସାପମାନଙ୍କର ଦାନ୍ତ ହିଁ ନାଗ ଓ ରଣା ସାପ ଦାନ୍ତଠାରୁ ଛୋଟ । ଏମାନଙ୍କ ଦାନ୍ତ ପାଟିର ଅଳ୍ପ ପଛପାଖକୁ ରହିଥାଏ । ସେଥିପାଇଁ ଏ ସାପମାନଙ୍କୁ ପଶ୍ଚବିଷଦାନ୍ତ ସାପ (Rear-fanged ବା Opisthoglyph) ବୋଲି କୁହାଯାଏ । ଛୋଟ ବିଷଦାନ୍ତଗୁଡ଼ିକ ଶକ୍ତ, କଠିନ ଓ ସ୍ଥିର ଭାବରେ ବାହାରକୁ ବାହାରି ପାଟି ଭିତରେ ଥାଏ । ଏ ଦାନ୍ତଗୁଡ଼ିକ ଇଞ୍ଜେକ୍ସନ୍ ଛୁଞ୍ଚି ପରି ନହୋଇ ଦାନ୍ତର ବାହାର ପାଖ ବଙ୍କା ଅଂଶରେ କେନାଲ ପରି ଖୋଲା ନାଳୀ (Longitudinal Groove) ରହିଥାଏ । ଏ ନାଳୀ ଦାନ୍ତ ମୂଳପାଖରୁ ଆରମ୍ଭ ହୋଇ ଦାନ୍ତ ଅଗଭାଗରେ ସରିଥାଏ । ବିଷ ନାଳୀ ମଧ୍ୟଦେଇ ଶତ୍ରୁ ଶରୀରକୁ ଖୋଲା ଆକାରରେ ଯାଇଥାଏ । ବୋଡ଼ା ଓ ଗର୍ତ୍ତମସ୍ତକୀ ବୋଡ଼ା ସାପମାନଙ୍କର ବିଷଦାନ୍ତ ଆକାରରେ ବେଶ୍ ବଡ଼ । ଏମାନଙ୍କ ପରିବାର ସାଧାରଣତଃ ଦୁଇଟି Crotalidae ଓ Viperidae । ଏମାନଙ୍କ ଦାନ୍ତଗୁଡ଼ିକ ଚାରିପଟେ ମାଂସ ଆବରଣ



ବିଷାକ୍ତ ସାପର ଦାନ୍ତ ସହ ମୁଣ୍ଡରେ ଥିବା ହାଡ଼ଗୁଡ଼ିକ

(Sheath ବା Folds of mucous membrane) ରହିଥାଏ ଏବଂ ପାଟିଭିତରେ ଭାଙ୍ଗିହୋଇ ରହିଥାଏ । ପାଟି ଖୋଲିଲେ ବା ଦଂଶନ କରିବାକୁ ଉଦ୍ୟତ ହେଲେ ଏମାନଙ୍କର ଦାନ୍ତ ଠିଆହୋଇ ସିଧା ହୋଇଯାଏ ଓ ଦଂଶନ କରିବାକୁ ସୁବିଧା ହୁଏ । ପାଟି ଭିତରେ ଭାଙ୍ଗିହୋଇ ଥିବାବେଳେ ଝିଲ୍ଲୀ ଆବରଣ ଆବୃତ କରିଥିବାରୁ ଦାନ୍ତ ଦେଖାଯାଏ ନାହିଁ । ଯଦିବା ଦେଖାଯାଏ, ତେବେ କେବଳ ବିଷଦାନ୍ତର ଅଗ ବେଳେବେଳେ ଟିକିଏ ଦେଖାଯାଏ । ଏ ସାପର ବିଷଦାନ୍ତଗୁଡ଼ିକ ଠିକ୍ ଇଞ୍ଜେକ୍‌ସନ୍ ଛୁଞ୍ଚି ପରି ଦେଖିବାକୁ ଓ କାର୍ଯ୍ୟ ମଧ୍ୟ ଛୁଞ୍ଚି ପରି ।



ଉପର ଓ ତଳ ପାଟିରେ ଥିବା ସାଧାରଣ ଦାନ୍ତଠାରୁ
ବେଶ୍ ବଡ଼ ଉପର ପାଟିର ବିଷଦାନ୍ତ



ଚଳନଶୀଳ ବିଷଦାନ୍ତ ଦୁଇଟିକୁ ଟେକି ସିଧା କରାଯାଉଛି



ଚଳନଶୀଳ ବିଷଦାନ୍ତ ଦୁଇଟି ଭିତରକୁ ଭାଙ୍ଗି ହୋଇ ରହିଥିବା ସମୟରେ ମାଂସ ଘୋଡ଼ାଇ ହୋଇ ରହିଥାଏ

ଆଫ୍ରିକୀୟ ବୋଡ଼ା ସାପର ଏକ ପରିବାର (Family-Bitis)ର ସାପମାନଙ୍କ ବିଷଦାନ୍ତର ଲମ୍ବ ପ୍ରାୟ ଦୁଇ ଇଞ୍ଚ । ଅର୍ଥାତ୍, ଏହାର ଆକାର ନାଗସାପ ଦାନ୍ତଠାରୁ ଦଶଗୁଣ ଲମ୍ବ ବା ବଡ଼ । ମଜାକଥା ହେଉଛି ଯେ, ଏ ବଡ଼ ବିଷଦାନ୍ତ ବିଷ ପ୍ରୟୋଗ କରିବା ଛଡ଼ା ଶିକାରକୁ ଗଳାମଧ୍ୟକୁ ଠେଲିନେବାରେ ସାହାଯ୍ୟ କରିଥାଏ ।

ବିଷାକ୍ତ ସାପର ବିଷଦାନ୍ତ ଛଡ଼ା ତଳପାଟି ଓ ଉପରପାଟିରେ ଧାଡ଼ି ହୋଇ ଛୋଟ ଛୋଟ ବିଷହୀନ ଦାନ୍ତ ମଧ୍ୟ ରହିଥାଏ । ଏ ଦାନ୍ତଗୁଡ଼ିକ ପ୍ରାୟ ସମାନ ଆକାରର । ଆଉ ପାଟିର ଭିତର ଆଡ଼କୁ ବଙ୍କା ହୋଇ ରହିଥାଏ । ତେଣୁ ଶିକାର ପାଟି ଭିତରୁ ସହଜରେ ଖସିପାରେ ନାହିଁ । ଏ ବଙ୍କା ଦାନ୍ତଗୁଡ଼ିକ ପାଟି ଭିତରୁ ବାହାରକୁ ଖସି ଆସିବାରେ ବାଧା ଉପୁଜାଇଥାଏ ।

ସବୁ ବିଷଧର ସାପଙ୍କର ବିଷଦାନ୍ତ ଝଡ଼ି ପଡ଼ିଥାଏ ଓ ପୁନର୍ବାର ଗଜୁରି ଉଠେ । ଜୀବନକାଳ ମଧ୍ୟରେ ଅନେକବାର ବା ବାରମ୍ବାର ଏପରି ଘଟିଥାଏ । କାର୍ଯ୍ୟ କରୁଥିବା ବିଷଦାନ୍ତ ପଛଆଡ଼କୁ ଦୁଇ ପାର୍ଶ୍ୱରେ ଦୁଇଧାଡ଼ି ଛୋଟ ଛୋଟ ଦାନ୍ତ ଉଠିଥାଏ । ଏଗୁଡ଼ିକ ଛୋଟରୁ ବଡ଼ କ୍ରମେ ସଜାଇ ହୋଇ ରହିଥାଏ । ଗୋଟିଏ ଝଡ଼ିପଡ଼ିଲେ ବା ଭାଙ୍ଗିଗଲେ ପାଖରୁ ପୁଣି ଦାନ୍ତ ଗଜୁରି ଉଠେ ଓ ବଡ଼ ହୁଏ ।

**୨୩. ସାପ ଖାଦ୍ୟ ଖାଇବାବେଳେ ବେଙ୍ଗ ବା ମୂଷାପରି ଶିକାର ସହଜରେ ଖସିଯାଏ ନାହିଁ କାହିଁକି ?**

ସାପ ପାଟି ମଧ୍ୟରେ ଦାନ୍ତଗୁଡ଼ିକ ଭିତର ପାଖକୁ ବଙ୍କା ହୋଇ ରହିଥିବାରୁ ଜୀଅନ୍ତା ପ୍ରାଣୀ ସାପ ପାଟିରୁ ଖସି ଯାଇପାରେ ନାହିଁ । ଦ୍ୱିତୀୟତଃ ଥରେ

ଶିକାର ପ୍ରାଣୀ ସାପ ପାଟିରେ ପଶିଲେ ସାପ ମଧ ପାଟି ମେଲାଇ ନଥାଏ । ଫଳରେ ପ୍ରାଣୀ ସାପ ପାଟିରୁ ଖସି ଯାଇପାରେ ନାହିଁ । ପାଟି ମଧରେ ଚାପି ଶ୍ୱାସରୁଦ୍ଧ କରିପକାଏ । ଶତ୍ରୁ ବା ଶିକାର ଖସି ନ ଯିବା ପାଇଁ ଭିତରକୁ ଥିବା ବଙ୍କା ଦାନ୍ତଗୁଡ଼ିକ ସହାୟକ ହୋଇଥାଆନ୍ତି ।

୨୪. ସମୁଦ୍ର ସାପ ଦଂଶନରେ ମୃତ୍ୟୁସଂଖ୍ୟା କମ୍ କାହିଁକି ?

ବିଷାକ୍ତ ସାପମାନଙ୍କର ବିଷଦାନ୍ତ ପାଟିର ଅଗଆଡ଼କୁ ବା ସାମାନ୍ୟ କଡ଼ଆଡ଼କୁ ରହିଥାଏ । ଉଦାହରଣ ସ୍ୱରୂପ ଗୋଖର ଓ ବୋଡ଼ା ସାପର ବିଷଦାନ୍ତ ଅଗକୁ ରହିଥାଏ । କିନ୍ତୁ ସାମୁଦ୍ରିକ ସାପର ଆକାର ସାନ ହେଲେ ହେଁ ସେମାନଙ୍କ ଦାନ୍ତଗୁଡ଼ିକ ପାଟିର ଟିକିଏ ଭିତର ଆଡ଼କୁ ରହିଥାଏ । ସାମୁଦ୍ରିକ ସାପଗୁଡ଼ିକ ବେଶ୍ ବିଷାକ୍ତ । କିନ୍ତୁ ସେମାନଙ୍କ ବିଷଦାନ୍ତ ପାଟି ଭିତରକୁ ରହିଥିବାରୁ ସେମାନେ କାମୁଡ଼ିଥିବା ପ୍ରାଣୀ ବା ଶତ୍ରୁକୁ ପୂରା ଭାବରେ କାମୁଡ଼ି ଧରି ହଠାତ୍ ବିଷ ପ୍ରୟୋଗ କରିପାରନ୍ତି ନାହିଁ । ଖୁବ୍ ଜୋର୍‌ରେ ଉତ୍‌କ୍ଷିପ୍ତ ହେଲେ ବା ରାଗିଗଲା ସମୟରେ ପାଟି ଅଧିକ ମେଲା ହୋଇଥାଏ । ସେହି ଅବସ୍ଥାରେ କାମୁଡ଼ିଲେ ଅଧିକ ବିଷ ଶତ୍ରୁ ଦେହକୁ ଯାଇଥାଏ । ତେଣୁ ଶତ୍ରୁ ମୃତ୍ୟୁମୁଖରେ ପଡ଼ିଥାଏ । ତେବେ ସମୁଦ୍ର ସାପ କାମୁଡ଼ାରେ ମୃତ୍ୟୁସଂଖ୍ୟା କମ୍‌ର କାରଣ ଦାନ୍ତଗୁଡ଼ିକ ପଛପାଖରେ ରହିଥିବାରୁ ।

୨୫. ବିଷଦାନ୍ତକୁ ବିଷ କେମିତି ଆସିଥାଏ ?

ବିଷଦାନ୍ତ ସହ ବିଷଥଳି ଲାଗି ରହିଥାଏ । ବିଷଥଳିର ନାଳୀ ବିଷଦାନ୍ତ ମୂଳରେ ଉନ୍ମୁକ୍ତ ଥାଏ । ଅର୍ଥାତ୍ ବିଷଗ୍ରନ୍ଥିର ନାଳୀ ହିଁ ବିଷଦାନ୍ତ ମୂଳକୁ ଲାଗିଥାଏ । ବିଷାକ୍ତ ସାପମାନଙ୍କର ବିଷଥଳି ଆଖି ପଛରେ ଅବସ୍ଥିତ । ଆମମାନଙ୍କର ଗାଲୁଆ ହେଲେ ଯେଉଁସ୍ଥାନଟି ଫୁଲେ, ସାପମାନଙ୍କର ବିଷଗ୍ରନ୍ଥି ସେହି ସ୍ଥାନରେ ରହିଥାଏ । ଏ ଥଳି ଅତି ସାନ ବେଲୁନ୍ ପରି ପଛଆଡ଼କୁ ଲମ୍ବି ବିସ୍ତୃତ ହୋଇ ରହିଥାଏ । ଆମମାନଙ୍କ ପାଟିରେ ଲାଳ ସଞ୍ଚୟ ହୋଇ ରହିଥିବା ପରି ବିଷାକ୍ତ ସାପମାନଙ୍କର ବିଷଗ୍ରନ୍ଥିରେ ବିଷ ସଞ୍ଚିତ ହୋଇ ରହିଥାଏ । ଏ ବିଷଗ୍ରନ୍ଥି ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ଉପକର୍ଣ୍ଣଗ୍ରନ୍ଥି ବା ପାରୋଟିଡ୍ ଗ୍ଲାଣ୍ଡ (Parotid Gland) ଅନୁରୂପ । ଉପକର୍ଣ୍ଣ ଗ୍ରନ୍ଥି ପରି ବିଷଗ୍ରନ୍ଥିର ଗୋଟିଏ ମାତ୍ର ସରଣୀ ଅଛି । ମୋଟାମୋଟି କହିବାକୁ ଗଲେ ରୂପାନ୍ତରିତ ଉପକର୍ଣ୍ଣୀୟ ଲାଳଥଳି ହିଁ ସାପର ବିଷଗ୍ରନ୍ଥି ।

୨୬. ସାପ ବିଷ କ'ଣ ସାପ ପାଟିରୁ ସଂଗ୍ରହ କରିହେବ ?

ପ୍ରତ୍ୟେକ ବିଷାକ୍ତ ସାପର ପାଟିରେ ଦୁଇଟିଯାକ ବିଷଦାନ୍ତ ମୂଳକୁ ଲାଗି ଆଖି ପଛକୁ ବିଷଥଳି ରହିଥାଏ । ଦୁଇଟି ବିଷଦାନ୍ତ ପାଇଁ ଦୁଇଟି ବିଷଥଳି ଅଲଗା ଅଲଗା ହୋଇ ଆଖି ଦୁଇଟି ପଛକୁ ଗୋଟି ଗୋଟି କରି ଅବସ୍ଥିତ । ସାପ ଦଂଶନ କଲାବେଳେ କେବଳ ନିଜ ପାଟିରୁ ବିଷ କ୍ଷରିତ ହୋଇ ଶତ୍ରୁ ଶରୀରକୁ ଯାଇଥାଏ । ଗୋଟିଏ ସାପ କ୍ରମାନ୍ୱୟରେ ବହୁବାର ଦଂଶନ କରିପାରେ ଏବଂ ବିଷ କ୍ଷରଣ କରିପାରେ । ତେବେ ଏହା ନିଜକୁ ରକ୍ଷା କରିବା ପାଇଁ ଏକ ଆତ୍ମରକ୍ଷା ଉପାୟ । ବିଷ ପ୍ରାକୃତିକ ଉପାୟରେ କ୍ଷରିତ ହୋଇଥାଏ । ଆମେ ସଂଗ୍ରହ କରିବାକୁ ଚାହିଁଲେ ସାପକୁ ଧରି ତାର ବିଷ ମଧ୍ୟ ସଂଗ୍ରହ କରିପାରିବା । ବିଷାକ୍ତ ସାପକୁ ଆଣି ତାର ମୁଣ୍ଡର ଆଖି ପଛପାଖକୁ ଚାପି ଧରିଲେ ବିଷଦାନ୍ତ ମଧ୍ୟଦେଇ ବିଷ ନିଗିଡ଼ି ଆସିଯିବ । ମୁଣ୍ଡ ପାଖକୁ ଚାପିଧରି ଦାନ୍ତଦୁଇଟି ତଳଭାଗରେ ଯେକୌଣସି ପାତ୍ର ଦେଖାଇଦେଲେ ଟୋପାଟୋପା ହୋଇ ବିଷ ଝରିଆସେ ।



ଉପର ପାଟିରେ ବିଷଦାନ୍ତ ସହ ବିଷଗ୍ରନ୍ଥିର ସଂଯୋଗ



ବିଷାକ୍ତ ସାପର ବିଷଦାନ୍ତ ସହ ପଛକୁ ଥିବା ଛୋଟ ଛୋଟ ଦାନ୍ତ



ପ୍ରବାଳ ସାପ ପାଟି ମଧ୍ୟରେ ଥିବା ସାନ ବିଷାକ୍ତ ଦାନ୍ତ

ହଁ ଆମ ଦେଶରେ ସାପ ବିଷ ସଂଗ୍ରହ କରାଯାଏ । ମୁମ୍ବାଇ ସ୍ଥିତ ହଫ୍‌କିନ୍ ପ୍ରତିଷ୍ଠାନ ବା ହଫ୍‌କିନ୍ ଇନ୍‌ଷ୍ଟିଚ୍ୟୁଟ୍ ଓ ହିମାଚଳ ପ୍ରଦେଶର କସାଓଲୀ ଠାରେ ଅବସ୍ଥିତ କେନ୍ଦ୍ର ଗବେଷଣା ପ୍ରତିଷ୍ଠାନରେ ସର୍ପ ବିଷହାରକ ଔଷଧ ତିଆରି ହେଉଛି । ଏଠାରେ ଗୋଟିଏ ଗ୍ଲାସପାତ୍ରରେ ପ୍ଲାଷ୍ଟିକ କନା ଶକ୍ତକରି ବାନ୍ଧି ଦିଆଯାଏ । ତାପରେ ବିଷାକ୍ତ ସାପଙ୍କୁ ଆଣି ଏ ପାତ୍ର ମୁହଁକୁ କାମୁଡ଼ାନ୍ତି । କାମୁଡ଼ିବା ଫଳରେ ବିଷ ସେ ପାତ୍ରରେ ସଂଗୃହୀତ ହୁଏ । ତା'ଛଡ଼ା ଆଉ କେତେକ ସ୍ଥଳରେ ବିଷାକ୍ତ ସାପର ବିଷଦାନ୍ତକୁ କାଚପାତ୍ର ଭିତରେ ରଖି ବିଷଗ୍ରନ୍ଥି ଉପରେ ଚାପ ପ୍ରୟୋଗ କରି ମଧ୍ୟ ବିଷ ସଂଗ୍ରହ କରାଯାଇଥାଏ ।

୨୭. ସାପ ବିଷ ଦେଖିବାକୁ କେମିତି ?

ସାପ ବିଷ ଏକ ତରଳ ପଦାର୍ଥ । ବିଭିନ୍ନ ସାପର ବିଷର ବର୍ଣ୍ଣ ଭିନ୍ନ ଭିନ୍ନ । ତେବେ ବିଷର ରଙ୍ଗ ଈଷଦ୍ ହଳଦିଆ ବା ମହୁ ବର୍ଣ୍ଣ କିମ୍ବା ସ୍ୱଚ୍ଛ ଅଥବା ଧଳା କିମ୍ବା ସବୁଜ ହଳଦିଆ ହୋଇଥାଏ । ଗୋଖର ବିଷ ସାମାନ୍ୟ ସ୍ୱଚ୍ଛ ହଳଦିଆ ଓ ଅଳ୍ପ ଚକ୍‌ଚକିଆ । ସୂର୍ଯ୍ୟକିରଣରେ ରଖିଲେ ବିଷ ସାମାନ୍ୟ ହଳଦିଆ ହୁଏ । ଶୀତଋତୁରେ ବିଷ ବେଶୀ ଘନ ବା ଗାଢ଼ । ଚନ୍ଦ୍ରବୋଡ଼ାର ବିଷ କେତେବେଳେ ଧଳା ତ ଆଉ କେତେବେଳେ ହଳଦିଆ । ଅଣ୍ଡିରା ଗୋଖର, ରଣା ଓ ଚିତି ସାପଙ୍କଠାରୁ ମାଈମାନଙ୍କ ତୁଳନାରେ ଅଧିକ ବିଷ ମିଳେ । ଭିନ୍ନ ଭିନ୍ନ ଋତୁରେ ସାପମାନଙ୍କଠାରେ ବିଷର ପରିମାଣରେ ତାରତମ୍ୟ ଦେଖାଯାଏ । ସାଧାରଣତଃ ଗ୍ରୀଷ୍ମଋତୁରେ ବେଶୀ ବିଷ ବିଷଗ୍ରନ୍ଥିରେ ଥାଏ । ମାତ୍ର ଶୀତଋତୁରେ ବିଷ ଅଳ୍ପ ପରିମାଣରେ ବାହାରେ । ଶୀତଋତୁରେ ବିଷ ଅପେକ୍ଷାକୃତ ବହଳିଆ । ଦେଖାଯାଏ ଯେ ଜନ୍ମର ପ୍ରଥମ ଦିନରୁ ସାପଠାରେ ବିଷ ଥାଏ ।

୨୮. କେଉଁ ସମୟରେ ସାପକାମୁଡ଼ା ମୃତ୍ୟୁ ଅଧିକ ହୋଇଥାଏ ?

ଅନୁମାନ କରାଯାଏ ଯେ, ଶୀତଋତୁରେ ବିଷର ମାରାତ୍ମକତା ଅନ୍ୟ ଋତୁ ଅପେକ୍ଷା କମ୍ । ଗ୍ରୀଷ୍ମଋତୁରେ ବେଶୀ ବିଷ ହେଉଥିବାରୁ ଲକ୍ଷ୍ୟ କରାଯାଇଛି ଯେ, ଗ୍ରୀଷ୍ମ ଓ ବର୍ଷା ଋତୁରେ ସାପକାମୁଡ଼ା ମୃତ୍ୟୁସଂଖ୍ୟା ଅଧିକ । ଜନ୍ମ ହେଉ ହେଉ ସାପଠାରେ ବିଷ ଥିବାରୁ ଏହା ମଧ୍ୟ ଦଂଶନ କରିପାରେ । ମାତ୍ର ବିଷର ପରିମାଣ ଯଥେଷ୍ଟ ହୋଇନପାରେ । ଯେଉଁ ସାପ ଦୁଇ ତିନିଥର ଲଗାତର ଦଂଶନ କରନ୍ତି, ପ୍ରଥମ ଦୁଇଥରରେ ଅଧିକ ପରିମାଣର ବିଷ ଦଂଶିତ ପ୍ରାଣୀ ଶରୀରକୁ ପ୍ରବେଶ କରିଥାଏ ।

୨୯. ସାପ ବିଷ କାହିଁକି ବିଷାକ୍ତ ?

ସାପ ବିଷଗୁଡ଼ିକର ରାସାୟନିକ ପରୀକ୍ଷାରୁ ଜଣାଯାଇଛି ଯେ ଏଗୁଡ଼ିକ ପୁଷ୍ଟିସାର ଜାତୀୟ ପଦାର୍ଥ । ସାପ ବିଷରେ ଖାଦ୍ୟରୁ ପୁଷ୍ଟିସାର ପ୍ରସ୍ତୁତକାରୀ ଏନ୍‌ଜାଇମ୍ ବା ଉଦ୍‌ସେଚକ, ଫସ୍‌ଫାଟିଡ଼େଜ୍ ଏବଂ ସ୍ନାୟବିକ ବିଷ ଥିବାରୁ ତାହା ବିଷାକ୍ତ । ସାପର ବିଷ ଏକ ବହଳିଆ ପାଚକରସ । ଏହା ବିଭିନ୍ନ ପ୍ରୋଟିନ୍‌ର ଏକ ମିଶ୍ରଣ କେବଳ । ବିଭିନ୍ନ ସାପର ବିଷରେ ଭିନ୍ନ ଭିନ୍ନ ପ୍ରୋଟିନ୍ ପରିମାଣ ଦେଖାଯାଏ । କେତେକ ସାପ ବିଷରେ ରକ୍ତଜମାଟ ବାନ୍ଧିବା ଗୁଣ ଅଛି । ଫସ୍‌ଫାଟିଡ଼େଜ୍‌ଗୁଡ଼ିକ ବିଷକ୍ରିୟାରେ ଗୁରୁତ୍ୱପୂର୍ଣ୍ଣ ଅଂଶଗ୍ରହଣ କରନ୍ତି । ସେମାନେ ରକ୍ତକୁ ପାଣି ଫଟାଇଦିଅନ୍ତି (Haemotoxic) । ହୃତ୍‌ପିଣ୍ଡ ଓ ରକ୍ତ ସଞ୍ଚାଳନ କ୍ରିୟାରେ ବ୍ୟାଘାତ ଘଟାନ୍ତି । ଆଉ କେତେକ ସାପର ବିଷ ସ୍ନାୟୁବିଷ ଭାବରେ କାର୍ଯ୍ୟ କରେ । ଅର୍ଥାତ୍, ସେ ବିଷ କେବଳ ସ୍ନାୟୁଗୁଡ଼ିକ ଉପରେ ପ୍ରଭାବ ପକାଇଥାଏ । ଗୋଖର ବିଷ ସ୍ନାୟବିଷ (Neurotoxic) ଅଟେ ।

୩୦. ବିଭିନ୍ନ ସାପ କ'ଣ ବିଭିନ୍ନ ପରିମାଣର ବିଷ ବାହାର କରନ୍ତି ?

ହଁ, ଭିନ୍ନ ଭିନ୍ନ ସାପ ଅଲଗା ଅଲଗା ପରିମାଣର ବିଷ କ୍ଷରଣ କରିଥାଆନ୍ତି । ବାଦାମୀ ଗୋଖର ତୁଳନାରେ କଳା ଗୋଖର ବେଶୀ ବିଷ ବାହାର କରନ୍ତି । ଗୋଖର ତୁଳନାରେ ଅହିରାଜ ଅଧିକ ବିଷ ଉଦ୍‌ଗୀରଣ କରନ୍ତି । କଳା ଗୋଖର ଓ ଅହିରାଜ ଅଧିକ ବିଷାକ୍ତ ବୋଲି ଜଣାଯାଏ । ସାଧାରଣ ଲୋକମାନେ ବି କଥାରେ କହନ୍ତି ଏମାନେ ଅଧିକ ବିଷ ନିର୍ଗତ କରନ୍ତି ବୋଲି । ତାହା ସତ କଥା । ତେବେ ଗୋଖର ସାପମାନଙ୍କଠାରେ ପରୀକ୍ଷା କରି ଦେଖାଯାଇଛି ଯେ ନିର୍ଦ୍ଦିଷ୍ଟ ବୟସ ପରେ ସମଜାତି ସାପମାନଙ୍କଠାରେ ବିଷର ପରିମାଣରେ ବିଶେଷ ତଫାତ୍ ପରିଲକ୍ଷିତ ହୁଏନାହିଁ ।

୩୧. ଶୁଣାଯାଏ ଭାରତର କେତେକ ସ୍ଥାନରେ ସାପ ଗରଳ ବା ବିଷ ଖାଆନ୍ତି ବୋଲି, ଏହା କ'ଣ ସତ କଥା ?

ସାପ ବିଷ ସାଧାରଣ ଭାବରେ ଅତ୍ୟନ୍ତ ଗାଢ଼ ପାଚକରସ । ଅର୍ଥାତ୍ ଏହା ହଜମକାରୀ ପଦାର୍ଥ । ଏହା ଖାଦ୍ୟ ହଜମ କରିବାରେ ସହାୟକ । ଏହା ମୁଖ୍ୟତଃ ଅମ୍ଳୀୟ ବୋଲି ଜଣାଯାଏ । ଶୁଖାଇଲେ ଏହା ଚିନି ପରି ଦାନା ଦାନା ବା ସ୍ଫଟିକାକାର ହୋଇଯାଏ । ଆମ ହାତରେ ବା ଶରୀରରେ ଖଣ୍ଡିଆ ଦାଗ ନଥିଲେ ତାକୁ ହାତରେ ଧରି ଗୋଳାଗୋଳି କରାଯାଇପାରେ । ମୁଖ୍ୟ କଥା ହେଲା ଏ ବିଷ ଆମ ଶରୀରର ରକ୍ତ ସଂସ୍ପର୍ଶରେ ଆସିବା କଥା ନୁହେଁ । ପାଟିଠାରୁ ଆରମ୍ଭ କରି ମଳଦ୍ୱାର ପର୍ଯ୍ୟନ୍ତ ଖାଦ୍ୟନଳୀରେ କୌଣସି କ୍ଷତ ନଥିଲେ ସାପ ବିଷକୁ ଖାଇଲେ ମଧ କେହି ମରିଯିବେ ନାହିଁ । ଶରୀରରେ କ୍ଷତ ନଥିଲେ ଓ ବିଷ ରକ୍ତ ସହ ନ ମିଶିଲେ ଏବଂ ସାପ ବିଷ ପିଇଲେ ଲୋକମାନଙ୍କଠାରେ ବିଷକ୍ରିୟାର କେତେକ ଲକ୍ଷଣ ଦେଖାଯାଇପାରେ । ମାତ୍ର ମୃତ୍ୟୁ କଦାପି ହେବନାହିଁ । ତେଣୁ ପାକଯନ୍ତ୍ରରେ କୌଣସି ଅସୁବିଧା ନ ଥାଇ ବିଷ ପିଇଲେ ମଧ କିଛି ଅସୁବିଧା ହେବନାହିଁ । କେତେକ ସ୍ଥାନରେ ସାପ ଗରଳ ସଂଗ୍ରହ କରି ପିଇବା କଥା ଶୁଣାଯାଏ । ଏହା ସତ ହୋଇପାରେ । ବିଶେଷ କରି ପୁରୀ ଆଦି କେତେକ ସହରର ଭାଙ୍ଗ ଖାଉଥିବା ଲୋକମାନେ ଭାଙ୍ଗରେ ସାପ ଗରଳ ମିଶାଇ ପିଅନ୍ତି । ତେବେ ଯଦି ଆବଶ୍ୟକ ନାହିଁ ଓ ଗରଳ ଦେହ ପାଇଁ ଖରାପ ବୋଲି ଶୁଣିଛେ ତାକୁ ପିଇବାକୁ ଉଦ୍ୟମ କରିବା ଠିକ୍ ନୁହେଁ । ସେଥିରୁ ଦୂରରେ ରହିବା ଉଚିତ୍ ।



ଚୀନ୍‌ରେ ନବବର୍ଷ ଉପଲକ୍ଷେ ବିଭିନ୍ନ ମନୋରଞ୍ଜନ କାର୍ଯ୍ୟକ୍ରମ ଅବସରରରେ ବେଜିଂ ନିକଟବର୍ତ୍ତୀ ଏକ ମନ୍ଦିର ଉତ୍ସବରେ ଜଣେ ମହିଳା ଗୋଟିଏ ସାପକୁ ପାଟି ଭିତରେ ପୂରାଉଛନ୍ତି ।

ପାଟିରେ ଖଣ୍ଡିଆ ନ ଥିଲେ ଯେକୌଣସି ଲୋକ ଦଂଶନ କରିଥିବା ସ୍ଥାନରୁ ବିଷ ଶୋଷିପାରିବ । କେତେକ ଗୁଣିଆ କ୍ଷତସ୍ଥାନ ଶୋଷଣ କରୁଥିବା ଅଛ ବହୁତେ ଶୁଣିଥିବେ ବା ଦେଖିଥିବେ । କିନ୍ତୁ ବିଷ ରକ୍ତରେ ମିଶିଥିଲେ ବିଷାକ୍ତ ଗୁଣ ବାହାରିଥାଏ । ରକ୍ତରେ ନ ମିଶିଲେ ଓ ଖଣ୍ଡିଆଖାବରା ନଥିଲେ ପାଟିକୁ ବା ଅନ୍ତନଳୀକୁ ବିଷ ଆସିଲେ ମଧ କିଛି କ୍ଷତି ହୋଇନଥାଏ । ତେବେ ଆମେ ନ ଜାଣି ନିଜେ ନିଜେ ବିଷ ଶୋଷିବା ପାଇଁ ଚେଷ୍ଟା କରିବା ଠିକ୍ ନୁହେଁ ।

୩୨. ବିଷାକ୍ତ ସାପ କାମୁଡ଼ିଲେ କି କି ଲକ୍ଷଣ ଦେଖାଯାଏ ?

ବିଷାକ୍ତ ସାପ କାମୁଡ଼ିଲେ ଯଦି ବିଷ ଶରୀର ମଧକୁ ଯାଇଥାଏ ତେବେ ଯେମିତି ହେଲେ କିଛି ନା କିଛି ଲକ୍ଷଣ ପ୍ରକାଶ ପାଏ । ସାଧାରଣତଃ ସାପ ମନୁଷ୍ୟର ଅଙ୍ଗପ୍ରତ୍ୟଙ୍ଗର ଶେଷ ଅଂଶକୁ ଦଂଶନ କରେ । କାରଣ ସେ ଅଂଶଗୁଡ଼ିକୁ କାମୁଡ଼ିବା ସାପ ପାଇଁ ସହଜ ହୋଇଥାଏ । ସାପ କୌଣସି ମୁଖ୍ୟ ରକ୍ତନଳୀ ବା ବାହିନୀକୁ ଦଂଶନ କଲେ, ବିଷକ୍ରିୟା ହଠାତ୍ ପ୍ରକାଶ ପାଏ । ଚନ୍ଦ୍ରବୋଡ଼ା ଦଂଶନରେ ବିଷ ରକ୍ତ ସଂବହନ ତନ୍ତୁରେ ସିଧାସଳଖ ଯଦି ପ୍ରବେଶ କରେ, ତେବେ ତତ୍କ୍ଷଣାତ୍ ମାଂସପେଶୀର ସଂକୋଚନ ଆରମ୍ଭ ହୁଏ ଏବଂ ଦଂଶିତ ବ୍ୟକ୍ତି ମୃତ୍ୟୁବରଣ କରିବା ନିଶ୍ଚିତ ହୋଇଯାଏ । ଗୋଖର ଦଂଶନରେ ଯଥେଷ୍ଟ ବିଷ କ୍ଷତିରେ ପ୍ରବେଶ କରିଥିଲେ ପାଞ୍ଚରୁ ଦଶ ମିନିଟ୍ ମଧରେ ଛୋଟ ଲାଲ ଚିହ୍ନ ଦେଖାଯିବ ଓ ସାମାନ୍ୟ ଜଳାପୋଡ଼ା ହେବ । ରୋଗୀ ନିଦୁଆ ହୋଇଯିବ ଓ ଠିଆ ହେବାକୁ କଷ୍ଟ ଲାଗିବ । ପ୍ରାୟ ଘଣ୍ଟାଏ ପରେ ପ୍ରଚୁର ଲାଳ ବାହାରିବ । ବାନ୍ତି ମଧ ହୋଇପାରେ । ପକ୍ଷାଘାତ ଦେଖାଦେବ । ଜିଭ ଫୁଲିଯିବ ଓ ରୋଗୀ ସହଜରେ ଖାଦ୍ୟ ଗିଳିପାରିବ ନାହିଁ । ଶେଷରେ କଥା ମଧ କହିବା କଷ୍ଟ ହୋଇପଡ଼ିବ । କ୍ରମେ ମାଂସପେଶୀର ସଂକୋଚନ ଘଟି ଶ୍ୱାସକ୍ରିୟା ବନ୍ଦ ହୋଇଯିବ ଓ ହୃତ୍‌କ୍ରିୟା ମଧ ବନ୍ଦ ହୋଇଯାଇ ରୋଗୀ ମୃତ୍ୟୁବରଣ କରିଥାଏ ।

ରଣା ବା ଚିତି ଦଂଶନରେ ଗୋଖର ଦଂଶନର ଲକ୍ଷଣମାନ ପ୍ରକାଶ ପାଏ । ମାତ୍ର କ୍ଷତ ଫୁଲିଯାଏ ନାହିଁ କି ସେଠାରେ ଜ୍ୱାଳା ହୁଏନାହିଁ । ଚନ୍ଦ୍ରବୋଡ଼ା ଓ ଧୂଳିନାଗ କାମୁଡ଼ାରେ ଦଂଶିତ ସ୍ଥାନରେ ପ୍ରବଳ ଯନ୍ତ୍ରଣା ହୁଏ । କ୍ଷତସ୍ଥାନରୁ ରକ୍ତସ୍ରାବ ହୋଇଥାଏ । ଘଣ୍ଟାଏ ଦୁଇଘଣ୍ଟା ମଧରେ ଚେତନା ଲୋପ ପାଇଯାଏ ।

କେଳାମାନଙ୍କୁ ସାପ କାମୁଡ଼ିଲେ ସେମାନେ ଡାଲମହୁରା ବା ଢାରମହୁରା ଲଗାନ୍ତି । ଏହା ବିଷନାଶକ ନୁହେଁ; ଏହା ଏକ ଶୋଷକ ପଦାର୍ଥ (Sucker) ମାତ୍ର । କ୍ଷତ ବା ଦଂଶିତ ସ୍ଥାନରୁ ବିଷାକ୍ତ ରକ୍ତ ଶୋଷି ନେବାପାଇଁ ଏହା ବ୍ୟବହୃତ ହୁଏ । ଢାରମହୁରା ଅଙ୍ଗାରୀକୃତ ଅସ୍ଥିଖଣ୍ଡ (Bone Charcoal) ବ୍ୟତୀତ ଆଉ କିଛି ନୁହେଁ । ଏହା ସାଧାରଣତଃ ଦକ୍ଷିଣ ଭାରତରେ ପ୍ରସ୍ତୁତ କରାଯାଏ । ବଙ୍ଗଳାରେ 'ମାଲ' ନାମରେ ଏକ ଜାତିର ଲୋକମାନଙ୍କର ବେଉସା ହେଉଛି ବିଭିନ୍ନ ଜାତିର ସାପ ଧରି ବ୍ୟବସାୟ କରିବା । ଗାତ ଭିତରୁ ସାପ ଧରିବାରେ ସେମାନେ ସିଦ୍ଧହସ୍ତ । ସାପ ଦ୍ୱାରା ଦଂଶିତ ହେଲେ ସେମାନେ ଏକପ୍ରକାର ସୂକ୍ଷ୍ମ ଅସ୍ତ୍ର ଚିକିତ୍ସା କରନ୍ତି । କୌଣସି ଚେରମୂଳିକୁ ସେମାନେ ବିଶ୍ୱାସ କରନ୍ତି ନାହିଁ ।

୩୩. ସାପ କାମୁଡ଼ାରେ ବିଷାକ୍ତ ସାପକାମୁଡ଼ା ବୋଲି କିପରି ଜାଣିବା ?

ସବୁ ସାପ ଆଦୌ ବିଷାକ୍ତ ନୁହଁନ୍ତି । ବିଷାକ୍ତ ସାପଗୁଡ଼ିକର ଉପରେ ପାଟିରେ ଦୁଇଟି ବଡ଼ ବିଷଦାନ୍ତ ରହିଥାଏ । ମାତ୍ର ବିଷହୀନ ସାପମାନଙ୍କ ପାଟି ମଧ୍ୟରେ ଏପରି ବଡ଼ ବିଷଦାନ୍ତ ରହିନଥାଏ । ସେଥିପାଇଁ ଦଂଶନରୁ ସାପ ବିଷାକ୍ତ ବା ବିଷହୀନ ଜଣାପଡ଼ିଯାଏ । ସର୍ପ ଯଦି ଠିକ୍‌ଭାବରେ ଜୋର୍‌ରେ ଦଂଶନ କରିଥିବ ତେବେ ସେଥିରୁ ନିଶ୍ଚୟ ଜାଣିହେବ ଯେ ସେ କାମୁଡ଼ା ବିଷାକ୍ତ କି ବିଷହୀନ ସାପର ବୋଲି ।

ବିଷହୀନ ସାପ ଦଂଶନରେ ଦାନ୍ତର ଚିହ୍ନଗୁଡ଼ିକ ଏକପ୍ରକାରର ଧାଡ଼ି ହୋଇ ଦଂଶିତ ବ୍ୟକ୍ତିର ଶରୀରରେ ଦେଖାଯିବ । ଏ ଚିହ୍ନଗୁଡ଼ିକ ପ୍ରାୟ ସମାନ ଆକାରର । ଆଉ ଏକା ପ୍ରକାରର ମଧ୍ୟ । ଚିହ୍ନଗୁଡ଼ିକ ସାଧାରଣତଃ ବଡ଼ ସାନ ନଥାଏ । ମାତ୍ର ବିଷାକ୍ତ ସର୍ପ ଦଂଶନରେ ଚିହ୍ନଗୁଡ଼ିକ ବିଷହୀନ ସାପକାମୁଡ଼ା ଚିହ୍ନପରି ଥାଇପାରେ ବା ନଥାଇପାରେ । ଯଦି ବିଷାକ୍ତ ସାପ କାମୁଡ଼ିଥାଏ, ତେବେ କାମୁଡ଼ାର ସବା ଆଗରେ ଦୁଇଟି ବା ଗୋଟିଏ ବଡ଼ ଦାନ୍ତ କାମୁଡ଼ା ଦାଗ ରହିଥାଏ । ଏପରି ବଡ଼ କାମୁଡ଼ା ଦାଗ ରହିଲେ ସେଇଟି ନିଶ୍ଚୟ ବିଷାକ୍ତ ସାପ କାମୁଡ଼ା ବୋଲି ଭାବିବାକୁ ପଡ଼ିବ । ତେଣୁ ମୋଟାମୋଟି ପ୍ରାଥମିକ ପର୍ଯ୍ୟବେକ୍ଷଣରୁ ସାପକାମୁଡ଼ା ବିଷାକ୍ତ ବା ବିଷହୀନ ସାପର ଜାଣିବା ସହଜଜନକ । ସାପ ତରବରିଆ ଭାବେ କାମୁଡ଼ିଲେ ଆଞ୍ଚୁଡ଼ା ଦାଗ ପଡ଼େ । ବିଷଦାନ୍ତ ଦାଗ ଦୁଇଟି ଟିକିଏ ଗଭୀର ଓ ସାମାନ୍ୟ ଛଡ଼ାଛଡ଼ାରେ ରହିଥାଏ ।



(କ)



(ଖ)

ସାପର ବିଷଦାନ୍ତ : କ—ଚନ୍ଦ୍ରବୋଡ଼ାର ବିଷଦାନ୍ତ ଭିତରେ ନାଳୀ ଅଛି । ବାମପାର୍ଶ୍ୱରେ ଗୋଖରର ବିଷଦାନ୍ତ । ସେଥିରେ ନାଳୀର ଉପରଭାଗ ମେଲା । ଖ—ତଳ ପାଟିର ସାଧାରଣ ନିଦାଦାନ୍ତ ।



(କ)



(ଖ)

କ—ବିଷାକ୍ତ ସର୍ପ ଦଂଶନରେ ଦାନ୍ତର ଯେଉଁ ଚିହ୍ନ ବସିଯାଏ, ତାର ରେଖାଚିତ୍ର । ସବା ଆଗରେ ବଡ଼ ଗୋଲାକାର ଚିହ୍ନ ବିଷଦାନ୍ତର, ବାକି ଚିହ୍ନଗୁଡ଼ିକ ସାଧାରଣ ଦାନ୍ତର । ଖ—ବିଷହୀନ ସର୍ପ ଦଂଶନରେ ବସୁଥିବା ଦାନ୍ତର ଦାଗ । ଏଥିରେ ଚିହ୍ନଗୁଡ଼ିକ ସବୁ ଏକାପ୍ରକାର । ସବା ଆଗରେ ବିଷଦାନ୍ତ ବସିଲେ ଯେପରି ବଡ଼ ଚିହ୍ନ ହୁଏ ତାହା ନାହିଁ ।

କେତେକ ବିଷାକ୍ତ ସାପ କାମୁଡ଼ିଲେ ମଧ୍ୟ ବେଳେବେଳେ କିଛି ଅସୁବିଧା ହୋଇନଥାଏ । ଏପ୍ରକାର କାମୁଡ଼ାକୁ ଶୁଖିଲା ଚୋଟ (Dry Bite) କୁହାଯାଏ । ଦେଖାଯାଇଛି ପ୍ରାୟ ପଚିଶ ଭାଗ ବିଷାକ୍ତ ସାପ ଶୁଖିଲା ଚୋଟ ମାରିଥାଆନ୍ତି, ଯେଉଁଥିରେ କି ବିଷ ନଥାଏ । ଏପରି ରୋଗୀକୁ ଗୁଣିଆ ତାର କରାମତିରେ ଆରୋଗ୍ୟ କରିଦେଲା ବୋଲି ଦାବି କରେ । ଶୁଖିଲା ଚୋଟରେ ବିଷ ଦଂଶିତ ବ୍ୟକ୍ତିର ଶରୀରକୁ ଯାଇନଥାଏ । ତେଣୁ ସେ ସ୍ଥଳରେ ରୋଗୀ ମୃତ୍ୟୁମୁଖରୁ

ବନ୍ଧ୍ୟାଇଥାଏ । ତେବେ ଏହା ଜାଣିବା କଷ୍ଟ ଯେ ବିଷାକ୍ତ ସାପ କାମୁଡ଼ାରେ ବିଷ ଶରୀରକୁ ପ୍ରବେଶ କରିଛି କି ନାହିଁ । ତେଣୁ ସମ୍ପୂର୍ଣ୍ଣ ସୁରକ୍ଷା ନିମିତ୍ତ ସନ୍ଦେହରେ ନପଡ଼ି ଜରୁରୀ ଚିକିତ୍ସା କରିବା ବିଧେୟ ।

**୩୪. ବିଷଦାନ୍ତ ଚିହ୍ନ ଜଣା ନପଡ଼ିଲେ ଅନ୍ୟ କେଉଁ ଉପାୟରେ ବିଷାକ୍ତ ସାପ କାମୁଡ଼ିଛି ବୋଲି ନିଶ୍ଚିତ ଜାଣିପାରିବା ?**

ସାପ କାମୁଡ଼ି ଥିଲେ କାମୁଡ଼ିଥିବା ଦାନ୍ତ ଚିହ୍ନ ବା ଦାଗରୁ ବିଷାକ୍ତ ବା ବିଷହୀନ ସାପ ଜାଣିପାରିବା କଥା । ଅବଶ୍ୟ ବେଳେବେଳେ କାମୁଡ଼ାରୁ ତାହା ଜାଣିବା କଷ୍ଟ ହୋଇପାରେ । ଦ୍ୱନ୍ଦରେ ପଡ଼ିଲେ ଆଉ ତିନୋଟି ଲକ୍ଷଣରୁ ବିଷାକ୍ତସାପ କାମୁଡ଼ା ବୋଲି ଜାଣିହେବ ।

(୧) ଖଣ୍ଡିଆ ବା କାମୁଡ଼ା ଦାଗ ଚାରିପଟରେ ଫୁଲା ଚିହ୍ନ (Puncture ଓ Swelling) ।

(୨) ଖଣ୍ଡିଆ ହୋଇଥିବା ଚମର ବର୍ଣ୍ଣ ଅସାଧାରଣ ଦେଖାଯିବା ବା ନୀଳ ପଡ଼ିଯିବା (Decolourisation) ।

(୩) ଖଣ୍ଡିଆ ସ୍ଥାନରୁ ନିରନ୍ତର ବା ଅବିରତ ଭାବରେ ଲସା ଓ ରକ୍ତକ୍ଷରଣ ହେବା (Oozing) ।

ଏ ତିନୋଟି ଲକ୍ଷଣ ରୋଗୀ ପାଖରେ ପ୍ରକାଶ ପାଇଲେ, ସେଥିରୁ ନିଶ୍ଚିତ ହେବାକୁ ପଡ଼ିବ ଯେ ରୋଗୀ ବିଷାକ୍ତ ସାପ ଦ୍ୱାରା ଦଂଶିତ ହୋଇଛି ବୋଲି । କିନ୍ତୁ ବିଷାକ୍ତ ସାପ କାମୁଡ଼ାରେ ନିଶ୍ଚିତ ଭାବରେ ବଡ଼ କ୍ଷତ ଦୁଇଟି ମୁଖ୍ୟତଃ ପରିଲକ୍ଷିତ ହୁଏ ।

**୩୫. ବିଷାକ୍ତ ସାପ କାମୁଡ଼ାରେ ହାରାହାରି କେତେ ଲୋକ ମରନ୍ତି ?**

ସାପକାମୁଡ଼ାରେ ହାରାହାରି କେତେ ଲୋକ ମରନ୍ତି କହିବା ସତରେ କଷ୍ଟ । କାରଣ ପ୍ରତ୍ୟେକ ବର୍ଷ ସାପକାମୁଡ଼ାରେ ମୃତ୍ୟୁସଂଖ୍ୟା ନିର୍ଦ୍ଦିଷ୍ଟ ନଥାଏ କି ରହିବା ସମ୍ଭବ ନ ହୋଇପାରେ । ତେବେ ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥା (World Health Organisation)ର ଏକ ବିବରଣୀ ଅନୁଯାୟୀ ବିଶ୍ୱରେ ପ୍ରତ୍ୟେକ ବର୍ଷ ହାରାହାରି ତିରିଶ ହଜାରରୁ ଚାଳିଶ ହଜାର ଲୋକ ମୃତ୍ୟୁର ସମ୍ମୁଖୀନ ହୋଇଥାଆନ୍ତି । ଆଉ ଭାରତରେ ଏ ସାପ କାମୁଡ଼ାରେ ପ୍ରତ୍ୟେକ ବର୍ଷ ମୃତ୍ୟୁମୁଖରେ ପଡୁଥିବା ସଂଖ୍ୟା ହେଉଛି ପ୍ରାୟ ସାତ ହଜାରରୁ ବାରହଜାର । ଏଥିରୁ ଅନୁମେୟ ଯେ

ସାପ କାମୁଡ଼ାରେ କେତେ ସଂଖ୍ୟାରେ ଲୋକମାନେ ସତରେ ମୃତ୍ୟୁବରଣ କରୁଛନ୍ତି ! ଅନ୍ୟ କୌଣସି ଜୀବମାନଙ୍କ ଆକ୍ରମଣରେ ଏତେ ଜୀବନ ସତରେ ହାନୀ ହୋଇନଥାଏ ।

୩୬. ସାପ କାମୁଡ଼ାରୁ କେଉଁ ସାପ କାମୁଡ଼ା ଚିହ୍ନିବା ସମ୍ଭବ କି ?

ସାପ ଦଂଶନ କରିବା ସମୟରେ ଚିହ୍ନିବା ଲୋକ ଯଦି ରୋଗୀ ପାଖରେ ଥିବେ ତାହାହେଲେ କେଉଁ ସାପ କାମୁଡ଼ିଗଲା ବୋଲି ପ୍ରାୟ ଜଣାପଡ଼ିଯିବ । ତେବେ ସେଥିପାଇଁ ପାଖରେ ଥିବା ଲୋକ ବା ଦଂଶିତ ଲୋକ ସାପ ଚିହ୍ନା ଉପରେ ଦକ୍ଷତା ଥିବା ଦରକାର । ଯଦି ସାପକୁ ପାଖରେ ଥିବା ଲୋକ କେହି ଜାଣିନପାରନ୍ତି, ତାହାହେଲେ କାମୁଡ଼ାରୁ ବା କାମୁଡ଼ା ଚିହ୍ନରୁ ସାପକୁ ଜାଣିବା କଷ୍ଟକର । ପ୍ରାୟ ଜାଣିହେବ ନାହିଁ କେଉଁ ସାପ କାମୁଡ଼ିଛି ବୋଲି । ତେବେ କେଉଁ ସାପ ଦଂଶନ କରିଛି ବୋଲି ଜାଣିବା ଉପରେ ଏତେ ଧ୍ୟାନ ନ ଦେଇ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରକୁ ନେଇ ରୋଗୀର ତୁରନ୍ତ ଚିକିତ୍ସା କରିବା ପ୍ରତି ପଦକ୍ଷେପ ନେବା ବିଧେୟ ।

୩୭. ବିଷାକ୍ତ ସାପ କାମୁଡ଼ିଥିଲେ ରୋଗୀର ଲକ୍ଷଣରୁ କେଉଁ ସାପ କାମୁଡ଼ିଛି ଜାଣିହେବ କି ?

ଆମ ଦେଶରେ ବିଷାକ୍ତ ସାପର ଗୋଷ୍ଠୀ ପ୍ରାୟ ପାଞ୍ଚପ୍ରକାର । ସେମାନେ ହେଲେ (୧) ନାଗ ବା ଗୋଖର, (୨) ରଣା, (୩) ବୋଡ଼ା, (୪) ପ୍ରବାଳ ଓ (୫) ସମୁଦ୍ର ସାପ । ତେବେ ଏ ସମସ୍ତ ବିଷାକ୍ତ ସାପ କାମୁଡ଼ିବା ପରେ କାମୁଡ଼ିବା ପ୍ରଭାବ ଓ ଲକ୍ଷଣରୁ ପ୍ରାୟ ଜାଣିହୁଏ ଯେ କେଉଁ ସାପ କାମୁଡ଼ିଛି ବୋଲି ।

(୧) ନାଗସାପ—ନାଗସାପ କାମୁଡ଼ିଲେ ୧୦ମିନିଟ୍‌ରୁ ଦୁଇଘଣ୍ଟା ମଧ୍ୟରେ ବିଭିନ୍ନ ପ୍ରକାର ଲକ୍ଷଣ ପ୍ରକାଶ ପାଏ । ପ୍ରଥମେ ପୋଡ଼ାଜଳା ହେବା ସହ କ୍ଷତସ୍ଥାନ ଫୁଲିଯାଏ । କ୍ଷତସ୍ଥାନରୁ ରକ୍ତ ବାହାରେ । ରୋଗୀ ଦୁର୍ବଳ ଅନୁଭବ କରିବା ସହ ନିଦୁଆ ଅନୁଭବ କରେ । ଧୀରେ ଧୀରେ କଥାବାର୍ତ୍ତା କରିପାରେ ନାହିଁ । ଲାଳ ପାଟିରୁ ଗଳେ । କିଛି ସମୟ ପରେ ବାନ୍ତି ହୁଏ ଓ ଶ୍ୱାସକ୍ରିୟା ଧୀର ହୋଇଯାଏ । ଶେଷରେ ଶ୍ୱାସକ୍ରିୟା ବନ୍ଦ ହୋଇଯିବାରୁ ରୋଗୀ ମୃତ୍ୟୁବରଣ କରେ ।



କଠଉ ଚିହ୍ନଯୁକ୍ତ ଭାରତୀୟ ନାଗସାପ

(୨) ରଣା ସାପ—ରଣା ସାପ କାମୁଡ଼ାରେ ନାଗସାପ କାମୁଡ଼ା ପ୍ରଭାବ ପରିଲକ୍ଷିତ ହୁଏ । ମାତ୍ର ଏଥିରେ ପେଟରେ ଖୁବ୍ ଯନ୍ତ୍ରଣା ହେବା ସହ ଅନ୍ତନଳୀ ଓ ପାକସ୍ଥଳୀରୁ ରକ୍ତ ବାହାରେ । ରଣା ସାପର ବିଷ ଖୁବ୍ ଉତ୍କଟ ।

(୩) ବୋଡ଼ା ସାପ—ବୋଡ଼ା ସାପ ଦଂଶନରେ କ୍ଷତସ୍ଥାନ ଅଧିକ ଫୁଲିଯାଏ । ଯନ୍ତ୍ରଣା ହିଁ କ୍ଷତସ୍ଥାନରୁ ସମୁଦାୟ ଶରୀରକୁ ବ୍ୟାପିଯାଏ । ବାନ୍ତି ଦେଖାଇ ବାନ୍ତି ହୁଏ । କିଛି ସମୟ ପରେ କ୍ଷତସ୍ଥାନରୁ ରକ୍ତ ବାହାରିବା ଆରମ୍ଭ କରେ । କ୍ଷତସ୍ଥାନରେ ଅଧିକ ବିଷ ପ୍ରବେଶ କରିଥିଲେ ବା ସାପ ଖୁବ୍ ଜୋର୍‌ରେ ଦଂଶନ କଲେ ହୃଦ୍‌ପିଣ୍ଡର କ୍ରିୟା ବନ୍ଦ ହୋଇଯାଏ । ତେଣୁ ମୃତ୍ୟୁ ସୁନିଶ୍ଚିତ ।

(୪) ସମୁଦ୍ର ସାପ—ସମୁଦ୍ର ସାପ କାମୁଡ଼ାର ଲକ୍ଷଣ ଠିକ୍ ନାଗସାପ ପରି । କିନ୍ତୁ ପ୍ରଭାବଗୁଡ଼ିକ ସାମାନ୍ୟ ବିଳମ୍ବରେ ପ୍ରକାଶ ପାଏ । ତେବେ ସମୁଦ୍ର ସାପ ସାମୁଦ୍ରିକ ଅଞ୍ଚଳରେ, ଦ୍ୱୀପ ଅଞ୍ଚଳରେ ଓ ପ୍ରବାଳ ଦ୍ୱୀପ ସ୍ଥାନମାନଙ୍କରେ କାମୁଡ଼ିବାର ସମ୍ଭାବନା ଅଧିକ । ଆଉ ସମୁଦ୍ର ସାପକୁ ମଧ ସହଜରେ



ଆହୁଲା ପରି ଲାଞ୍ଜ ଥାଇ ସମୁଦ୍ର ସାପ

ଜାଣିହୁଏ, କାରଣ ତାର ଆକାର ଛୋଟ ଏବଂ ଲାଞ୍ଜ ଦୁଇପାର୍ଶ୍ୱରୁ ନୌକା ଆହୁଲା ପରି ଚଟକା ।

୩୮. ସାପ କାମୁଡ଼ାରେ କି ପ୍ରକାର ପ୍ରାଥମିକ ଚିକିତ୍ସା କରିବା ଦରକାର ?

ସର୍ପ ଦଂଶନରେ ତୁରନ୍ତ ଚିକିତ୍ସା ଆବଶ୍ୟକ । ସାପକାମୁଡ଼ା ମନୁଷ୍ୟ ମନରେ ସବୁବେଳେ ଭୟ ସଞ୍ଚାର କରିଥାଏ । ତେଣୁ ସର୍ବପ୍ରଥମ କର୍ତ୍ତବ୍ୟ ହେଉଛି ଦଂଶିତ ବ୍ୟକ୍ତି ମନରେ ଭୟ ଦୂରକରିବା । ତାକୁ ସାନ୍ତ୍ୱନା ଦେବା । ମନ ମଧ୍ୟରେ ମନୋବଳ ଦୃଢ଼ କରିବା । ତେଣୁ ମାନସିକ ଅବସ୍ଥା ଠିକ୍ ରହିଲେ ଦଂଶିତ ବ୍ୟକ୍ତି ମନ ଠିକ୍ ରୁହେ । ନଚେତ୍ ଅଚେତ ହୋଇଯିବା ବା ସଂଜ୍ଞାହୀନ ହୋଇଯିବା ଅଥବା ସ୍ନାୟବିକ ଦୁର୍ବଳତା ଅନୁଭବ କରିବା ସ୍ୱାଭାବିକ ।

ତାପରେ ଦଂଶିତ ସ୍ଥାନର ଅଳ୍ପ ଉପରକୁ କୌଣସି ପ୍ରକାରରେ ବାନ୍ଧିଦେବା ଉଚିତ୍ । ଏହାଦ୍ୱାରା ବିଷ ଶରୀର ଅଙ୍ଗର ଉପରଆଡ଼କୁ ସହଜରେ ଓ ଚଞ୍ଚଳ ଯାଇପାରିବ ନାହିଁ । ତେବେ ଏ ବନ୍ଧା ଅଧିକ ସମୟ ଅର୍ଥାତ୍ ଅଧଘଣ୍ଟାରୁ ଅଧିକ ରହିବା ଠିକ୍ ନୁହେଁ । ପ୍ରତି ଦଶମିନିଟ୍‌ରେ ଟିକିଏ ଢ଼ିଲା କରି ପୁଣି ବାନ୍ଧିଦେବା ଦରକାର । ତାପରେ ଦଂଶିତ ସ୍ଥାନକୁ ଛକପରି କାଟି ବିଦାରି ଦେବାକୁ ହେବ । ବିଦାରିବା ପରେ ସେ ସ୍ଥାନରୁ ରକ୍ତ କାଢ଼ିଦେବା ବ୍ୟବସ୍ଥା କରିବା ଉଚିତ । ରକ୍ତ ନିଷ୍କାସନ କିଛି କରିସାରି ସାମାନ୍ୟ ପଟାସିୟମ୍ ପରମାଙ୍ଗାନେଟ୍ ଦ୍ରବଣରେ ଚିରାଯାଇଥିବା ସ୍ଥାନକୁ ଧୋଇଦେବା ଦରକାର । ଏ ଦ୍ରବଣ ବ୍ୟବହାର କରିବା ଦ୍ୱାରା ବ୍ୟାଧି ସଂକ୍ରମଣ ନିବାରିତ ହୋଇଥାଏ ।

୩୯. ପ୍ରାଥମିକ ଚିକିତ୍ସା ପରେ ଆଉ କ'ଣ କରାଯିବା ଆବଶ୍ୟକ ?

ହଠାତ୍ ବାନ୍ଧିଦେଇ ରକ୍ତ ଅଳ୍ପ କାଢ଼ିଦେବା ପରେ ସେ ଅବସ୍ଥାରେ ନିକଟସ୍ଥ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ବା ଡାକ୍ତରଖାନା ନେଇ ଡାକ୍ତରଙ୍କ ସହ ପରାମର୍ଶ କରିବା ଦରକାର । ଯଦି ବିଷଧର ସାପ କାମୁଡ଼ିଥାଏ, ତେବେ ଡାକ୍ତରଙ୍କ କଥା ଅନୁସାରେ ଆଣ୍ଟିଭେନିନ୍ (Antivenin) ଇଞ୍ଜେକ୍ସନ୍ ଲେଖିଲେ ତାହା ଦଂଶିତ ବ୍ୟକ୍ତିକୁ ତୁରନ୍ତ ଦେବା ଉଚିତ । ପ୍ରତ୍ୟେକ ଛଅଘଣ୍ଟା ଅନ୍ତରରେ ଥରେ ଇଞ୍ଜେକ୍ସନ୍ ଦେବାକୁ ପଡ଼ିପାରେ । ବିଷକ୍ରିୟାର ପ୍ରଭାବ ବା ଲକ୍ଷଣ ସମ୍ପୂର୍ଣ୍ଣ ଉଭେଇ ଗଲେ ଇଞ୍ଜେକ୍ସନ୍ ବନ୍ଦ କରିବା ଦରକାର । ତେବେ ଘରେ ଆଣ୍ଟିଭେନିନ୍ ଇଞ୍ଜେକ୍ସନ୍ ସବୁବେଳେ ଗୋଟିଏ ମହଜୁଦ କରି ରଖିବା ଦରକାର । ସାପ କାମୁଡ଼ିଲେ ତାହା ଦେଇଦେଲେ ରୋଗୀ ଅନ୍ତତଃ ହଠାତ୍ ମୃତ୍ୟୁରୁ ରକ୍ଷା ପାଇପାରିବ । ତାପରେ ଡାକ୍ତରଖାନାରେ ଚିକିତ୍ସା କରାଯାଇପାରେ ।

୪୦. ସାପ କାମୁଡ଼ିଲେ ଗୁଣିଗାରେଡ଼ି ବା ଗୁଣିଆ ସହାୟତା ନେବା ଉଚିତ୍ କି ?

ସାପକାମୁଡ଼ାର ପ୍ରଥମ ଅବସ୍ଥାରେ କି ଶିକ୍ଷିତ କି ଅଶିକ୍ଷିତ ଲୋକେ ଝଡ଼ାଫୁଙ୍କା, ମନ୍ତ୍ରପାଠ ଓ ଗଦ ଇତ୍ୟାଦି ଲଗାଇବାରେ ଅଯଥା ସମୟ କଟାନ୍ତି । ଏପରିକି ଦୂରଦୂରାନ୍ତରୁ ଗୁଣିଆ ଆଣିବାରେ ଅଯଥା ବ୍ୟସ୍ତ ରହି ଡେରି କରିଥାଆନ୍ତି । ଏହିପରି ଅବହେଳା ହେତୁ ଅକାଳରେ ରୋଗୀ ମୃତ୍ୟୁମୁଖରେ ପଡ଼ିଥାନ୍ତି । ଏସବୁ ନକରି ଲୋକମାନେ ଯଦି ବିଜ୍ଞାନସମ୍ମତ ପଦ୍ଧତିର ଆଶ୍ରୟ ନେଉଥାଆନ୍ତେ, ତେବେ ଦଂଶିତ ବ୍ୟକ୍ତି ଅଯଥାରେ ହଇରାଣ ହରକତ ନହୋଇ ମୃତ୍ୟୁବରଣ କରିବାକୁ ପଡୁନଥାନ୍ତା । ସେଥିପାଇଁ ସାପ ଓ ସାପକାମୁଡ଼ା ସମ୍ବନ୍ଧରେ ଏକ ସାଧାରଣ ଧାରଣା ଆମ ସମସ୍ତଙ୍କର ରହିବା ଦରକାର ।

ସାପ କାମୁଡ଼ିବା ମାତ୍ରେ ବା ବିଷାକ୍ତ ସାପ କାମୁଡ଼ାର ଲକ୍ଷଣ ପ୍ରକାଶ ପାଇବା ମାତ୍ରେ ଗୁଣିଗାରେଡ଼ିରେ ସମୟ ନଷ୍ଟ ନ କରି ନିକଟସ୍ଥ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରକୁ ଦଂଶିତ ବ୍ୟକ୍ତିକୁ ଆଣି ତୁରନ୍ତ ଡାକ୍ତରଙ୍କ ସହ ପରାମର୍ଶ କରିବା ବିଧେୟ । ଅନେକ ସମୟରେ ଲୋକମାନେ ଭାବନ୍ତି ଯେ, ଗୁଣିଗାରେଡ଼ି ଦ୍ୱାରା ସାପକାମୁଡ଼ା ଲୋକ ବା ପିଲା ଭଲ ହୋଇଗଲା ବୋଲି । କିନ୍ତୁ ଭଲ ହୋଇଯିବା ସେଇଠି ସମ୍ଭବ ଯେଉଁଠି କେବଳ ବିଷହୀନ ସାପ କାମୁଡ଼ିଥାଏ । ବିଷାକ୍ତ ସାପ କାମୁଡ଼ାରେ ଗୁଣିଗାରେଡ଼ି କାମ କରିନଥାଏ । ଏ ପ୍ରକାର ବିଶ୍ୱାସ ଭୁଲ୍ । ଏ କଥାର ଆଶ୍ରୟ ନେବା ଠିକ୍ ନୁହେଁ । ବିଷାକ୍ତ ସାପ କାମୁଡ଼ା ପାଇଁ ଔଷଧ, ଇଞ୍ଜେକ୍ସନ୍ ବା ଆଣ୍ଟିଭେନିନ୍ ପ୍ରୟୋଗ ଦ୍ୱାରା ହିଁ ରୋଗୀ ଆରୋଗ୍ୟ ଲାଭ କରିବା ସମ୍ଭବ ହୋଇଥାଏ । ଲୋକମାନଙ୍କ କଥାରେ ଟୁଣୁକାଟୁଣିକି ବାଟରେ ରୋଗୀକୁ ନେଇ ଚିକିତ୍ସା କରିବା ଅନୁଚିତ । ଏ ଦିଗରେ ଆମେ ସମସ୍ତେ ଅନ୍ଧବିଶ୍ୱାସ ଓ କୁସଂସ୍କାରଠାରୁ ଦୂରରେ ରହି ଡାକ୍ତରଙ୍କୁ ପରାମର୍ଶ କରିବା ନିହାତି ଜରୁରୀ ।

୪୧. ସାପକାମୁଡ଼ାକୁ ମନ୍ତ୍ର କ'ଣ ଭଲ କରିପାରେ ?

ସାପକାମୁଡ଼ାକୁ ମନ୍ତ୍ର ଭଲ କରିବା ସମ୍ଭବ ନୁହେଁ । ବିଷହୀନ ସାପ କାମୁଡ଼ିଥିଲେ ମନ୍ତ୍ର ଉଚ୍ଚାରଣ କରି ଶୁଣାଇଥିବା ବ୍ୟକ୍ତିର ପଦଗୁଡ଼ିକ ଶୁଣି ମାନସିକ ଅବସ୍ଥା ଠିକ୍ ହୋଇଯିବା ଦ୍ୱାରା ଦଂଶିତ ବ୍ୟକ୍ତି ଅବଶ୍ୟ ଠିକ୍ ହୋଇଯାଇପାରେ । କାରଣ ସାପକାମୁଡ଼ାରେ ସର୍ବପ୍ରଥମ ଦାୟିତ୍ୱ ହେଉଛି ଯେ ଦଂଶିତ ବ୍ୟକ୍ତିକୁ ସମସ୍ତେ ଘେରି ନଯାଇ ତାର ମାନସିକ ଅବସ୍ଥା ଠିକ୍ କରିବା । ମନୋବଳ ଦୃଢ଼ ରହିଲେ ତାର ବିଶେଷ ଅସୁବିଧା ହୋଇନଥାଏ । ଯେକୌଣସି ସାପକାମୁଡ଼ାରେ ଲୋକ

ମୃତ୍ୟୁମୁଖରେ ପଡ଼ିବାର କାରଣ ବା ସଂଜ୍ଞାହୀନ ହେବାର କାରଣ ମାନସିକ ଦୁର୍ବଳତା ।

ବିଷଧର ସାପ କାମୁଡ଼ିଥିଲେ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ନ ନେଇ ଅନ୍ୟ ବିକଳ୍ପ ପନ୍ଥାର ଆଶ୍ରୟ ନେଲେ ଦେହର ଚାରିଆଡ଼କୁ ବିଷ ଖେଳେଇ ଯାଇ ରୋଗୀ ଅବଶ ହୋଇଯାଏ । ଅଚେତ ହୋଇଯିବା ସହ ପାଟି ଫିଟିପାରେ ନାହିଁ । କଥା କହିପାରେ ନାହିଁ । ଶେଷରେ ଶ୍ୱାସପ୍ରଶ୍ୱାସ ଓ ହୃତ୍‌କ୍ରିୟା ବନ୍ଦହୋଇ ମରିବା ହିଁ ଶ୍ରେଷ୍ଠ ହୋଇଥାଏ । ତେଣୁ ମନ୍ତ୍ର କଦାପି ସାପ କାମୁଡ଼ାକୁ ଭଲ କରିପାରେ ନାହିଁ । ବିଷାକ୍ତ ସାପକାମୁଡ଼ା ପାଇଁ ଡାକ୍ତରୀ ଚିକିତ୍ସା ବା ଇଞ୍ଜେକ୍‌ସନ୍ ହିଁ ଅବ୍ୟର୍ଥ ଔଷଧ । ଆଉ ବିଷହୀନ ସାପ ପାଇଁ ବ୍ୟସ୍ତ ନହୋଇ ତାକୁ ସାନ୍ତ୍ୱନା ଦେଇ ତା' ସହ ଭଲ କଥାବାର୍ତ୍ତା କରିବା ଉଚିତ ।

**୪୨. ସାପକାମୁଡ଼ାରୁ ରକ୍ଷା ପାଇବା ପାଇଁ କି ବ୍ୟବସ୍ଥା କରାଯାଇପାରେ ?**

ସାପକାମୁଡ଼ାରୁ ରକ୍ଷା ପାଇବା ପାଇଁ ଅନେକଗୁଡ଼ିଏ ସାଧାରଣ ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କରାଯାଇପାରେ ।

(୧) ପ୍ରଥମତଃ ସାପମାନେ ଚଳପ୍ରଚଳ କରୁଥିବା ସ୍ଥାନରେ ଆମେ ସମସ୍ତେ ପାଦକୁ ଆଣ୍ଠୁପର୍ଯ୍ୟନ୍ତ ଉପଯୁକ୍ତ ଭାବରେ ରକ୍ଷା କରିବା ପାଇଁ ଜୋତା ବ୍ୟବହାର କରିବା ଉଚିତ ।

(୨) ଅନେକ ସମୟରେ ଘରେ ମୂଷା ଓ ବେଙ୍ଗ ଦେଖାଯାଉଥିବାରୁ ଘରକୁ ଏମାନଙ୍କ ଦାଉରୁ ରକ୍ଷା କରିପାରିଲେ ସର୍ପ ଦଂଶନରୁ ମଧ ରକ୍ଷା ମିଳିପାରେ । ମୂଷା ଓ ବେଙ୍ଗ ହିଁ ସାପମାନଙ୍କର ପ୍ରାକୃତିକ ଖାଦ୍ୟ ହୋଇଥିବାରୁ ସେମାନଙ୍କ ଅନ୍ୱେଷଣରେ ସାପ ଘରେ, ବଗିଚାରେ, ବାଡ଼ିରେ, ରୋଷେଇଘରେ ଏବଂ ଗୋଦାମଘରେ ପଶିଯାଆନ୍ତି ।

(୩) ଚାଷ କରୁଥିବା ଅଞ୍ଚଳରେ ମୟୂର ରଖିବା, ନେଉଳ ପୋଷିବା ଏବଂ ଯେଉଁଠାରେ ସମ୍ଭବ ସେଠାର କ୍ଷେତ, ଖମାର ଓ ବିଲମାନଙ୍କରେ ବେଳେ ବେଳେ ପେଚା ଓ ଚିଲ ପାଳିବା ଦ୍ୱାରା ବା ପରିବେଶରେ ଏପରି ଜୀବ ଥିବା ଦ୍ୱାରା ସାପଙ୍କ ପ୍ରାଦୁର୍ଭାବ ଅନେକ ପରିମାଣରେ କମାଇ ଦିଆଯାଇପାରେ । କାରଣ ମୟୂର ସାପକୁ ଆକ୍ରମଣ କରେ ଓ ଖାଏ । ଆଉ ମଧ ନେଉଳ ସାପମାନଙ୍କର ପ୍ରାକୃତିକ ଶତ୍ରୁ । ସେହିପରି ପେଚା ଓ ଚିଲ ମଧ ସାପଙ୍କର ଶତ୍ରୁ ।

(୪) ବିଶେଷକରି ବାଡ଼ିବଗିଚାରେ କୁଟା, କାଠି, ଅଳିଆଗଦା ଓ ପତ୍ରଆଦି ଗଦାକରି ରଖିବା ଅନୁଚିତ୍ । ଏପରିକି ଇଟା ପଥର ଆଦି ଗଦା କରି ରଖିଲେ ସେଠାରେ ସାପମାନେ ରହିବାର ସମ୍ଭାବନା ଅଧିକ । ସେ ସ୍ଥାନଗୁଡ଼ିକ ସାପମାନଙ୍କର ଅତି ପ୍ରିୟ ସ୍ଥାନ । ତେଣୁ ନିଜ ପରିବେଶ ଚାରିପଟେ ଏପରି ଗଦା ନ ରଖିଲେ ସାପ ରହିପାରିବେ ନାହିଁ ।

(୫) ସାପକୁ ଦୂରେଇ ରଖିବାର ଆଉ ଏକ ଉପାୟ ହେଉଛି ଘର ଚାରିପାଖରେ କାର୍ବୋଲିକ୍ ଏସିଡ୍‌ରେ ପାଣି ମିଶାଇ ସିଞ୍ଚିବା । ଏହାର ଗନ୍ଧରେ ସେମାନେ ସେ ପାଖ ମାଡ଼ନ୍ତି ନାହିଁ ।

ତେବେ ସାପମାନଙ୍କଠାରୁ ଦୂରରେ ରହିବା ପାଇଁ ଉପରୋକ୍ତ ଉପାୟଗୁଡ଼ିକର ସାହାଯ୍ୟ ନିଆଯିବା ଉଚିତ୍ । କିନ୍ତୁ ତାଙ୍କୁ ଦେଖିଲେ ମାରିଦେବା ଠିକ୍ ନୁହେଁ । ଆମ ପରିବେଶର ଭାରସାମ୍ୟ ପାଇଁ ସେମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପ୍ରାକୃତିକ ଓ କୃଷି ଅର୍ଥନୀତିରେ ସାପର କାର୍ଯ୍ୟକଳାପ ଅନେକ ।

୪୩. ସାପମାନେ ଅଣ୍ଡା ଦିଅନ୍ତି ନା ଛୁଆ ଦିଅନ୍ତି ?

ସାପମାନେ ସାଧାରଣତଃ ଅଣ୍ଡା ଦେଇଥାଆନ୍ତି । କାରଣ ପ୍ରତ୍ୟେକ ସରୀସୃପର ଅଭ୍ୟାସ ଅଣ୍ଡାଦେବା । କିନ୍ତୁ ବୋଡ଼ା ସାପ ଥରକେ ତିନିଦିନ ମଧ୍ୟରେ ୪୦ରୁ ୭୫ଟି ଛୁଆ ପ୍ରସବ କରିଥାଏ । ମାତ୍ର ଅନ୍ୟ ସାପମାନେ ଭୂଇଁରେ ଅଣ୍ଡା ଦେଇଥାଆନ୍ତି । ନାଗସାପ, ଗୋଖର ସାପ, ଅହିରାଜ ସାପ ଓ ଧଣ୍ଡସାପ ଇତ୍ୟାଦି ଅଣ୍ଡା ଦେଇଥାଆନ୍ତି । ବୋଡ଼ାପରି ସମୁଦ୍ରସାପ ଓ କେତେକ ବୃକ୍ଷସାପ ମଧ୍ୟ ଛୁଆ ଦେବାର ଜଣାଯାଏ ।

୪୪. ସାପମାନେ କ'ଣ ପକ୍ଷୀପରି ବସା ତିଆରି କରନ୍ତି ?

ସାପମାନେ ମୁଖ୍ୟତଃ ପକ୍ଷୀ ବା ଚଢ଼େଇମାନଙ୍କ ପରି ବସା ବାନ୍ଧି ନଥାଆନ୍ତି । ସେମାନେ ଭୂଇଁରେ ଅଣ୍ଡା ଦେଇଥାଆନ୍ତି । ମାତ୍ର ସାପମାନଙ୍କ ମଧ୍ୟରେ ଅହିରାଜ ଏକମାତ୍ର ସାପ ଯେ କି ଦୁଇତାଲା ବସା ତିଆରି କରିଥାଏ । ଅହିରାଜ ଭୂଇଁରେ କାଠି, କୁଟା, ମାଟି ଓ ବାଉଁଶ ପତ୍ରରେ ନୀଡ଼ ତିଆରି କରି ସେଥିରେ ଅଣ୍ଡା ଦିଅନ୍ତି । ତଳ ତାଲାରେ ଅଣ୍ଡାଗୁଡ଼ିକ ରୁହେ ଓ ଉପର ତାଲାରେ ଅହିରାଜ ଅଣ୍ଡାଗୁଡ଼ିକୁ ଜଗିରୁହେ ।

୪୫. ମାଈ ଓ ଅଣ୍ଡିରା ସାପ ମଧ୍ୟରେ କିଛି ପ୍ରଭେଦ ଅଛି କି ?

ମାଈ ଓ ଅଣ୍ଡିରା ସାପ ମଧ୍ୟରେ ହଠାତ୍ ପ୍ରଭେଦ ଜଣାପଡ଼େ ନାହିଁ । ତେବେ ଜାଣିବାର ଏକ ମୁଖ୍ୟ ଉପାୟ ହେଉଛି ଯେ ଅଣ୍ଡିରା ସାପମାନଙ୍କର ଲାଞ୍ଜ ସବୁବେଳେ ମାଈ ଅପେକ୍ଷା ବଡ଼ ହୋଇଥାଏ । ଆଉ ଏକା ପ୍ରକାର ସାପର ଏକା ବୟସର ମାଈସାପ ଅଣ୍ଡିରାସାପ ଅପେକ୍ଷା ଲମ୍ବରେ ବଡ଼ ।

୪୬. ସାପ ଦୁଇଟି ବେଳେ ବେଳେ ଗୁଡ଼େଇ ହୋଇ ଅନେକ ସମୟ ପର୍ଯ୍ୟନ୍ତ ରହିବାର କାରଣ କ'ଣ ?

କେତେକଙ୍କ ମତରେ ଦୁଇଟି ସାପ ପରସ୍ପର ଗୁଡ଼େଇହୋଇ ରହିବା ହେଉଛି ସେମାନଙ୍କ ମଧ୍ୟରେ ମିଳନ ପ୍ରକ୍ରିୟା । ଦୁଇଟି ସମଲିଙ୍ଗୀ ସାପ ମଧ୍ୟରେ ଲଢ଼େଇ ବା ଯୁଦ୍ଧ ହେଲେ ସେମାନେ ପରସ୍ପର ଗୁଡ଼େଇ ହୋଇ ଅନେକ ସମୟ ପର୍ଯ୍ୟନ୍ତ ମୁଣ୍ଡ ଟେକି ରହିଥାଆନ୍ତି । ଏହି ସମୟରେ କିଛି ଲୋକ ଏ ଦୃଶ୍ୟ ଦେଖି ସେମାନଙ୍କ ଉପରେ ଧଳାଲୁଗା ପକାଇଥାଆନ୍ତି । ପୂଜା କରିଥାଆନ୍ତି । ତେବେ ଏହା ଏକ ପରସ୍ପର ହିଂସାପରାୟଣ ମନୋଭାବର ନମୂନା । ମାତ୍ର ପଛଭାଗ ବା ଲାଞ୍ଜଭାଗ କେବଳ କଡ଼କୁ କଡ଼ ଲାଗି ରହିଥିଲେ ବା ଗୁଡ଼େଇହୋଇ ରହିଲେ ତାହା ମାଈ ଓ ଅଣ୍ଡିରା ସାପ ମଧ୍ୟରେ ମିଳନ ।

୪୭. ସାପମାନେ କେଉଁ ଋତୁରେ ବେଶୀ ନଜରକୁ ଆସନ୍ତି ?

ବର୍ଷାଋତୁରେ ଭାରତର ସବୁ ଅଞ୍ଚଳରେ ସାପଗୁଡ଼ିକ ବେଶୀ ସଂଖ୍ୟାରେ ଦେଖାଯାଆନ୍ତି । ବିଶେଷକରି ସଡ଼କ ବା ରାସ୍ତାଗୁଡ଼ିକରେ ବେଶୀ ଦେଖାଯାଆନ୍ତି । ଏମାନେ ଏ ଋତୁରେ ମଧ୍ୟ ଅଧିକ ସକ୍ରିୟ ଥାଆନ୍ତି । ସାପମାନେ ସ୍ୱଭାବତଃ ନିଶାଚର । ବର୍ଷାଋତୁରେ ସାପ ଜନ୍ମ ହୁଅନ୍ତି । ସେଥିପାଇଁ ଛୋଟ ସାପଗୁଡ଼ିକ ଅର୍ଥାତ୍ ସାପ ଛୁଆମାନେ ବର୍ଷା ସମୟରେ ବେଶୀ ସଂଖ୍ୟାରେ ବୁଲୁଥିବାର ନଜରକୁ ଆସେ । ତଥାପି ଅନ୍ୟ ଦିନରେ ବି ସାପମାନେ ବୁଲୁଥାଆନ୍ତି ।

୪୮. ସାପ କ'ଣ ଶତ୍ରୁର ପ୍ରତିଶୋଧ ନିଏ ?

ଅନେକ ସମୟରେ ଶୁଣିବାକୁ ମିଳେ ଯେ ଜଣେ ଗୋଟିଏ ସାପକୁ ମାରିଦେଲେ ଅନ୍ୟ ଗୋଟିଏ ସାପ ଅର୍ଥାତ୍ ମରିଥିବା ସାପର ସାଙ୍ଗ ଅନୁଧାବନ କରି ବା ଗୋଡ଼େଇ ଗୋଡ଼େଇ ପ୍ରତିଶୋଧ ନିଏ ବୋଲି । ମାତ୍ର ଏହା ଏକ ଭୁଲ୍ କଥା । କିନ୍ତୁ ଏ କଥାରେ ଟିକିଏ ସତ୍ୟତା ଥାଇପାରେ । ସାପଟିଏ ମାରିଦେଲେ ତାହାର ମଳମୂତ୍ର ଦ୍ୱାରରୁ ଏକ ରସ କ୍ଷରିତ ହୋଇଥାଏ । ଏହି ଗନ୍ଧରେ ହୁଏତ

ପାଖରେ ଥିବା ତାର ସାଙ୍ଗ ସେ ସାପପାଖକକୁ ଆସିପାରେ । ଅଥବା ହଠାତ୍ କାହିଁକି ଏପରି ସାପଦେହରୁ ଦୁର୍ଗନ୍ଧ ସୃଷ୍ଟି ହେଲା ବୋଲି ସେ ସ୍ଥାନକୁ ନିରୂପଣ କରିବାକୁ ଆସିପାରେ । ତେବେ ସେମାନେ ପ୍ରତିଶୋଧପରାୟଣ ନୁହଁନ୍ତି ।

## ୪୯. ଭାରତରେ ସର୍ପପୂଜାର ମହତ୍ତ୍ୱ କ'ଣ ?

ଭାରତରେ ଆଚାର ଦୃଷ୍ଟିରୁ ବିଶେଷ କରି ଗୋଖର ବା ନାଗ ସାପକୁ ଅନେକ ମାରନ୍ତି ନାହିଁ । କେରଳରେ ଅନେକ ଲୋକ ତାଙ୍କ ହତା ମଧ୍ୟରେ ସାପ ପୂଜା ନିମିତ୍ତ ଏକ ନିର୍ଦ୍ଦିଷ୍ଟ ସ୍ଥାନ ରଖିଥାଆନ୍ତି । ସାପମାନେ ମୂଷାମାନଙ୍କ ପରି କୃନ୍ତନକାରୀ ପ୍ରାଣୀମାନଙ୍କୁ ନିପାତ କରୁଥିବାରୁ ଆମର ଲକ୍ଷ୍ମୀ (ଧାନ, ବିରି, କୋଳଥ, ମୁଗ ଆଦି ଶସ୍ୟ) ବା ଐଶ୍ୱର୍ଯ୍ୟ ବଢ଼ିଥାଏ । ଅର୍ଥାତ୍ ଆମର ଶସ୍ୟହାନୀ ହୋଇନଥାଏ । ସମ୍ଭବତଃ ଏହି ବିଶ୍ୱାସରୁ ସର୍ପପୂଜାର ଉତ୍ପତ୍ତି ହୋଇଛି । ବିଶେଷକରି ଓଡ଼ିଶାରେ ନାଗ ଚତୁର୍ଦ୍ଦଶୀ ଓ ନାଗପଞ୍ଚମୀ ଆଦି ଦିନଗୁଡ଼ିକରେ ନାଗମାନଙ୍କୁ ପୂଜା କରିବାର ବିଧି ବେଶ୍ ଅନେକ ଦିନରୁ ରହିଆସିଛି । ପରିବେଶରୁ ଏପରି ପ୍ରାଣୀମାନଙ୍କୁ ସଂରକ୍ଷଣ କରି ବଞ୍ଚାଇବା ଓ ସେମାନଙ୍କ ବଂଶବୃଦ୍ଧି ଘଟାଇବାର ଏହା ଏକ ସର୍ବୋତ୍କୃଷ୍ଟ ଉପାୟ ।



ଭୋପାଳଠାରେ ନାଗପଞ୍ଚମୀ ଅବସରରେ ଜଣେ ମହିଳା
ସାପକୁ ପୂଜା କରି ପ୍ରଣାମ କରୁଛନ୍ତି ।

୫୦. ସାପ ଶତ୍ରୁର ଆଭାସ ପାଇଲେ ଚଟ୍ କରି କେଉଁଆଡ଼େ ଚାଲିଯାଏ ?

ସାପ ତ ବାସ୍ତବିକ ଗୋଟିଏ ଡରକୁଳା ଜୀବ । ସାମାନ୍ୟ ଶବ୍ଦର ସନ୍ଧାନ ପାଇଲେ ବା ତା' ଆଖି ସାମନାରେ କିଏ ଏପାଖ ସେପାଖ ହେଲେ ସେ ଆଖି ପିଛୁଳାକେ ସେଠାରୁ ଉଭେଇଯାଏ । ଅର୍ଥାତ୍, ସେ ସେହି ଆଖପାଖରେ ନିଜକୁ ଲୁଚେଇବା ପରି ସ୍ଥାନରେ ପ୍ରଥମେ ଛପିଯାଏ । ଚୁପ୍‌ଚାପ୍ ରହିଯାଏ । ତାପରେ ନିରାପଦ ମଣିଲେ ବା ଶତ୍ରୁ ତା' ପାଖକୁ ନ ଆସିବା ଠଉରେଇ ପାରିଲେ ସେ ତାର ସାଧାରଣ ଭାବରେ ଯାତାୟାତ ଆରମ୍ଭ କରେ । କିନ୍ତୁ ତତ୍‌କ୍ଷଣାତ୍ ଶତ୍ରୁକୁ ଦେଖି ବହୁଦୂରକୁ ଚାଲିଯାଇ ନଥାଏ । ଆମେ ହଠାତ୍ ଦେଖି ତାପରେ ଦେଖିପାରୁନାହୁଁ ବୋଲି ଭୁଲ୍‌ରେ ଭାବୁ ଯେ ସାପଟି ବହୁଦୂରକୁ ଚାଲିଗଲା ବୋଲି । ସେଇଟା ଭୁଲ୍ କଥା । ଶତ୍ରୁ ନ ଦେଖିପାରିବା ପରି ସେ ଛଦ୍ମବେଶୀ ଭାବରେ ନିଜକୁ ପରିବେଶ ସହ ଖାପଖୁଆଇ ପ୍ରଥମେ ଛପିଯିବା ତାର ଅଭ୍ୟାସ ।

୫୧. ଆମେ କଥାରେ ଅହିନକୁଳ ସମ୍ପର୍କ କଥା ଯାହା କହୁ ତାହା କ'ଣ ?

ସାପର ଅନ୍ୟ ନାମ ହେଉଛି ଅହି । ନକୁଳର ସାଧାରଣ ନାମ ନେଉଳ । ନେଉଳ ହେଉଛି ଗୋଟିଏ ସ୍ତନ୍ୟପାୟୀ ଜୀବ । ସାପ ଯେପରି ପଡ଼ିଆରେ, କ୍ଷେତରେ ବା ଜମିରେ ବୁଲାଚଲା କରିଥାଏ, ଠିକ୍ ସେପରି ବିଚରଣ ଦେଖାଯାଏ ନେଉଳ ଠାରେ । କଥା ହେଉଛି ସାପ ପ୍ରତି ଆମ ସମସ୍ତଙ୍କର ଭୟ ରହିଛି । ଅର୍ଥାତ୍ ପ୍ରତ୍ୟେକ ମଣିଷ, ଛୁଆ, ପିଲା, ବୁଢ଼ା, ବୁଢ଼ୀ, ଯୁବକ ଓ ଯୁବତୀ ଆଦି ତା' ନାମ ଶୁଣିଲେ ବା ତାକୁ ଦେଖିଲେ ମନ ଯେମିତି ଶୀତେଇଯାଏ । ଲୋମ ଟାଙ୍କୁରି ଉଠେ । ଲୋକମାନେ ସତରେ ଭୟରେ ଛାନିଆ ହୋଇଯାଆନ୍ତି । କିନ୍ତୁ ନେଉଳ ସାପକୁ ଦେଖିଲେ ଆଦୌ ଡରେ ନାହିଁ । ସାପ ଯେମିତି ତାକୁ ଆକ୍ରମଣ କରି ଖାଇବାକୁ ଉଦ୍ୟତ ହୁଏ, ନେଉଳ ବି ସେମିତି ତାକୁ ଦେଖି ପଛେଇଯାଏ ନାହିଁ । ଯେସାକୁ ତେସା ପରି ସାମନାସାମନି ହୋଇ ବୀର ସୈନିକ ଭଳି ଲଢ଼େଇ କରିଥାଏ । ସାପ ଫଣା ଟେକି କାମୁଡ଼ିବାକୁ ଚେଷ୍ଟା କଲାବେଳେ ନେଉଳ ଦୁଇଗୋଡ଼ ଟେକି ସାପକୁ କାମୁଡ଼ିବାକୁ ଆଗେଇ ଯାଇଥାଏ । ଏମାନେ ପରସ୍ପରକୁ ଦେଖି ନଲୁଚି ଆକ୍ରମଣ କରିବାକୁ ଆଗେଇ ଯାଇଥାଆନ୍ତି ବୋଲି ଏମାନଙ୍କୁ ପରସ୍ପରର ଦୃଢ଼ ଶତ୍ରୁ ଭାବରେ ବିବେଚନା କରାଯାଏ । ସେଥିପାଇଁ ଶତ୍ରୁତା ଅଧିକା ଦେଖାଗଲେ କଥାରେ କୁହାଯାଏ ଅହିନକୁଳ ସମ୍ପର୍କ ବୋଲି । ତେବେ ମୋଟାମୋଟି ସାପ ଓ ନେଉଳର ଏ ଲଢ଼େଇ ସାହସିକତାର ପରିଚୟ ଦେଇଥାଏ ।

୫୨. ସାପ ଓ ନେଉଳ ଲଢ଼େଇରେ ସାପ କାହିଁକି ନେଉଳକୁ କାମୁଡ଼ି ପାରେନାହିଁ ?

ସାପମାନେ ଭକ୍ଷକ । ତେଣୁ ଜୀବନ୍ତ ଜୀବ ଦେଖିଲେ ବା ବାସନା ବାରିପାରିଲେ ସେମାନେ ସେହି ଶିକାରକୁ ପାଇବା ପାଇଁ ଆଗେଇଯାଆନ୍ତି । ଆଖପାଖରେ ଶିକାର ସେମାନେ ବାରିବାରେ ଧୁରନ୍ଧର । ଏମିତି ବୁଲୁବୁଲୁ ଆଖିରେ ନେଉଳ ବି ବେଳେବେଳେ ପଡ଼ିଯାଏ । ତେବେ, ନେଉଳକୁ ଦେଖିଲେ ସେ ତାକୁ ଖାଇବାକୁ ଚେଷ୍ଟା କରେ । କିନ୍ତୁ ନେଉଳ ଏପରି ଏକ ଜୀବ ଯେ ସାପକୁ ଦେଖି ସେ ଖସି ପଳାଇଯିବାକୁ ଚେଷ୍ଟା କରେନାହିଁ । ସେ ବୀର ସୈନିକ ପରି ସାମନାସାମନି ଲଢ଼େଇ କରିବାକୁ ପଛାଏ ନାହିଁ । ଲଢ଼େଇରେ 'ପଛ ଘୁଞ୍ଚା ନାହିଁ ବୀରଙ୍କର ଜାତକେ' ପରି ଦୃଶ୍ୟ ନେଉଳଠାରେ ଦେଖାଯାଏ । ଲଢ଼େଇବେଳେ ସାପକୁ ଦେଖି ନେଉଳ ତାର ସମୁଦାୟ ଶରୀରକୁ ଫୁଲାଇଦିଏ । ଲୋମଗୁଡ଼ିକ ଟାଙ୍କୁରି ଉଠେ । ତେଣୁ ସାପ ଏପରି ଟାଙ୍କୁରି ଉଠିଥିବା ଲୋମଶ ପ୍ରାଣୀକୁ ଫଣା ମାରିବା ବେଳକୁ ବା ଚୋଟମାରିବା ବେଳେ ସହଜରେ କାମୁଡ଼ି ପାରେନାହିଁ । ଦାନ୍ତରୁ ଖସିଯାଏ ଟାଙ୍କୁରି ଉଠିଥିବା ଲୋମ । ସାପ ଦାନ୍ତଗୁଡ଼ିକ ନେଉଳ ଦେହରେ ଲାଗିପାରେ ନାହିଁ । ତେଣୁ ନେଉଳ ସହଜରେ ଖସିଯାଏ ଓ ମରିପାରେ ନାହିଁ । ସାପକାମୁଡ଼ାରୁ ନେଉଳ ତ୍ରାହି ପାଇଯାଇଥାଏ ।



ଗୋଖର ଓ ନେଉଳ ମଧ୍ୟରେ ଲଢ଼େଇ । କେବଳ ଚଟପଟ୍ ସ୍ୱଭାବ ଯୋଗୁଁ ନେଉଳ ଜିତେ । ସେ ଗୋଖରର ଠିକ୍ ମୁଣ୍ଡ ପଛକୁ ଦାନ୍ତ ବସାଇ ସାପର ମେରୁଦଣ୍ଡ ଭାଙ୍ଗିଦିଏ

୫୩. ଅଜଗର ସାପ ପ୍ରାଣୀକୁ ଗିଳିଲା ପରେ ଗଛରେ କ'ଣ ସତରେ ଗୁଡ଼ାଇହୁଏ ?

ଅଜଗର ସାପ ବେଶ୍ ବଡ଼ ବଡ଼ ପ୍ରାଣୀମାନଙ୍କୁ ସହଜରେ ଗିଳିବା ତାର ଅଭ୍ୟାସ । ପ୍ରଥମେ ଜୀବକୁ ଆକ୍ରମଣ କରି ପାଟିରେ କାମୁଡ଼ିଧରି ଧୀରେ ଧୀରେ ଗିଳିବାକୁ ଚେଷ୍ଟା କରେ । ମୁଣ୍ଡପାଖରୁ କାମୁଡ଼ିଥିଲେ ମୁଣ୍ଡଟି ସାପ ପାଟିଭିତରେ ରହି ଶ୍ୱାସରୁଦ୍ଧ ହୋଇ ମରିଯିବା ପରେ ତାକୁ ଆରାମରେ ଗିଳି ପକାଇଥାଏ । ମାତ୍ର ପ୍ରାଣୀର ପଛ ପାଖରୁ ପାଟିରେ ଧରିଥିଲେ ଟିକିଏ ଅଧିକ ସମୟ ଲାଗେ ଗିଳିବା ପାଇଁ । ତେବେ ଯାହାହେଲେ ବି ଶ୍ୱାସରୁଦ୍ଧ ହୋଇ ପାଟିରେ ମରିଯିବା ପରେ ଅଜଗର ସମ୍ପୂର୍ଣ୍ଣ ଭାବରେ ଗିଳିଥାଏ । ଜୀବ ବେଶ୍ ବଡ଼ ହୋଇଥିଲେ ପେଟ ମଧ୍ୟରେ ଲମ୍ବ ହୋଇ ରହିଯାଏ । ତାର ହାଡ଼ଗୁଡ଼ିକ ସହଜରେ ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଯିବା ଲାଗି ସାପ ଗଛରେ ଗୁଡ଼ାଇ ହୋଇଯାଏ । ତେଣୁ ଶିକାରଟି ସହଜରେ ହଜମ ହୋଇଯିବା ସମ୍ଭବ ହୋଇଥାଏ ।



କେନ୍ଦ୍ର ଆମେରିକାର ମୁସୁରାନା ନାମକ ଏକ ବିଷାକ୍ତ ସାପ । ଅଜଗର ସାପ ଜିଅନ୍ତା ସାପମାନଙ୍କୁ ଗିଳି ଏ ସାପ ପରି ଏମିତି ଗୁଡ଼ାଇ ହୋଇଯାଏ ।

**୫୪. ସାପ କ'ଣ ବିଷ ମଣିଷ ଛେପ ପକାଇବା ପରି ଫୋପାଡ଼ିଥାଏ କି ?**

ମଣିଷ ବେଳେବେଳେ ଥୁ ଥୁ କରି ଛେପ ବା ଖଙ୍କାର ପାଟିରୁ କାଢ଼ି ବାହାରେ ପକାଇଥାଆନ୍ତି । ଏହା ହେଉଛି ଲାଳ, କଫ ବା ଶ୍ଳେଷ୍ମା । କେବଳ ମଣିଷ କାହିଁକି ଏକପ୍ରକାର ସାପ ମଧ୍ୟ ବିଷକୁ ଖଙ୍କାର ଫିଙ୍ଗିବା ପରି ବାହାରକୁ ଫୋପାଡ଼ିଥାଏ । ସେ ସାପଟି ହେଉଛି ଆଫ୍ରିକା ମହାଦେଶର କଳା ଗ୍ରୀବା ନାଗ (Black Neck Cobra) । ଏହାର ବେକ ପାଖଟି କଳା ବର୍ଣ୍ଣର ।

**୫୫. ସାପ ଚଢ଼େଇ ପରି ଉଡ଼ିପାରନ୍ତି କି ?**

ଶୁଣାଯାଏ ଯେ, ଉଡ଼ନ୍ତା ସାପ (Flying Snake) କଥା । ସାପ ପକ୍ଷୀମାନଙ୍କ ପରି କଦାପି ଉଡ଼ିପାରେ ନାହିଁ । ଉଡ଼ିବା ଆଦୌ ସମ୍ଭବ ମଧ୍ୟ ନୁହେଁ । କାରଣ ଉଡ଼ିବା ପାଇଁ ଉପଯୁକ୍ତ ଡେଣା ଦରକାର । କୌଣସି ସାପର ଡେଣା ନଥାଏ । ତେଣୁ ସେମାନେ ଉଡ଼ିବା କଥା ଠିକ୍ ନୁହେଁ । କିନ୍ତୁ ଲାଉଡ଼ଙ୍କ ବା ଲାଉଡ଼ଙ୍କିଆ ସାପ ବା ବୃକ୍ଷ ସାପମାନେ ଗଛଗୁଡ଼ିକରେ ଖୁବ୍ କ୍ଷିପ୍ରଗତିରେ ଯିବାଆସିବା (Gliding) କରିପାରନ୍ତି । ଢଣାପଡ଼େ ସତେଯେପରି ଉଡ଼ିକରି ଯାଉଛନ୍ତି । କିନ୍ତୁ ତଳେ ପଡ଼ିଗଲେ ଜୋର୍‌ରେ ଯିବାଆସିବା କରିପାରନ୍ତି ନାହିଁ । ଜାଭାରେ ଦେଖାଯାଉଥିବା ଏକପ୍ରକାର ସାପ ଅବଶ୍ୟ ଖୁବ୍ ଜୋର୍‌ରେ ଯାଇପାରନ୍ତି । ତେବେ ସାପ ଉଡ଼ିବା କଥା ସତ ନୁହେଁ । ଲୋକମାନେ ଭୁଲ୍‌ରେ ଏପରି କହିଥାଆନ୍ତି । ଖବରକାଗଜରେ ଏପରି କଥା ମଧ୍ୟ ପଢ଼ିବାକୁ ଯାହା ମିଳେ ସେଥିରେ ସତ୍ୟତା ସମ୍ଭବ ନୁହେଁ ।

**୫୬. ଡମଣା ସାପ କ'ଣ ଗାଈ ଟୀରରୁ କ୍ଷୀର ପାନ କରେ ?**

ଡମଣା ଗୋଟିଏ ନିର୍ଦ୍ଦିଷ୍ଟ ସାପ । ଏ ସାପ ନିଜ ଦେହରୁ ଏକପ୍ରକାର ଦୁର୍ଗନ୍ଧ ବାହାର କରେ । ଆଉ ମଧ୍ୟ ସେ ପାୟୁଗ୍ରନ୍ଥିରୁ ଏକପ୍ରକାର କଳାରସ କ୍ଷରଣ କରେ । ତେବେ ଏ ସାପ ବିଷୟରେ ବିଶ୍ୱାସ ଯେ ଡମଣା ତା ଲାଞ୍ଜରେ ଗାଈର ଗୋଡ଼କୁ ଛନ୍ଦି ଟୀରରୁ କ୍ଷୀର ପାନ କରେ । ତାକୁ ଚିପିଧରିଲେ ତା' ତଣ୍ଟିରୁ ଚିଲ ଶବ୍ଦ କଲାପରି ଏକପ୍ରକାର ଶବ୍ଦ ବାହାରେ । ଡମଣା ହିଁ ଗୋଖର ସହ ରମଣ କରେ । ଏପରି ଅନେକ ଲୋକକଥା ଆମର ଶୁଣାଯାଏ । ଅବଶ୍ୟ ଡମଣାର ଲାଞ୍ଜ ବେଶ୍ ବଡ଼ ଓ ସେ ଡାଳରେ ଲାଞ୍ଜକୁ ଗୁଡ଼ାଇ ଓହଳି ରହିପାରେ । କିନ୍ତୁ ଲାଞ୍ଜକୁ ଗୁଡ଼େଇ ଗାଈଠାରୁ କ୍ଷୀରପିଇବା ବା ଗୋଖର ସହ ରମଣ କରିବା କଥା ଠିକ୍ ନୁହେଁ । ସାପମାନଙ୍କ ନାଆଁରେ ଏମିତି ଅନେକ ଭୁଲ୍‌କଥା ବା

ଅନ୍ଧବିଶ୍ୱାସ ଏବେ ବି ରହିଯାଇଛି । ଆମେ ନଜାଣି ଓ ଠିକ୍ ଭାବରେ ନ ବୁଝି ଏଗୁଡ଼ିକୁ ବିଶ୍ୱାସ କରିବା ଉଚିତ ନୁହେଁ ।

୫୭. ସାପ ମୁଣ୍ଡରେ କ'ଣ ଶିଙ୍ଗ ଥାଏ କି ?

ସାପମାନଙ୍କ ମୁଣ୍ଡରେ ଗାଈ, ଛେଳି ଓ ମେଣ୍ଢା ଆଦି ପ୍ରାଣୀଙ୍କ ପରି ଶିଙ୍ଗ ଆଦୌ ନଥାଏ । ଶିଙ୍ଗ ମୁଖ୍ୟତଃ କେତେକ ସ୍ତନ୍ୟପାୟୀ ପ୍ରାଣୀମାନଙ୍କଠାରେ ଥାଏ । ଅବଶ୍ୟ ସ୍ତନ୍ୟପାୟୀ ଶ୍ରେଣୀର ଦୁଇଟି ପରିବାର (Bovidae ଓ Cervidae) ଅର୍ଥାତ୍, ଗାଈ ଓ ହରିଣ ପରିବାରର ପ୍ରାଣୀମାନଙ୍କଠାରେ ଶିଙ୍ଗ ଦେଖାଯାଏ । ଖୁବ୍ କ୍ୱଚିତ୍ ସାପମାନଙ୍କଠାରେ ଶିଙ୍ଗ ପରି ଆକାର ଦେଖାଯାଏ । ମାତ୍ର ସେଗୁଡ଼ିକ ଶିଙ୍ଗ ନୁହେଁ । ଏହାର ଉଦାହରଣ ହେଉଛି ଶିଙ୍ଗିଆ ରାଟଲ୍ ସାପ (Horned Rattle Snake) ବା କଡ଼ମୋଡ଼ା ସାପ (Sidewinder) । ଶିଙ୍ଗଥିବାରୁ ତାର ବୈଜ୍ଞାନିକ ନାମ *Crotalus cerastes* । ଏ ସାପର ପ୍ରତ୍ୟେକ ଆଖିର ଉପର ଭାଗରେ ଟାଣ କାତିପରି ଅଂଶ ଦୁଇଟି ଟେକି ହୋଇ ରହିଥିବାରୁ ଶିଙ୍ଗ ପରି ଦେଖାଯାଏ । ଏପ୍ରକାର ରାଟଲ ସାପର ଆକାର ଛୋଟ । ଶିଙ୍ଗିଆ ରାଟଲସାପର ଖାଦ୍ୟ ହେଉଛି ଛୋଟ ଛୋଟ ମରୁଭୂମିର ମେରୁଦଣ୍ଡୀ ପ୍ରାଣୀ ଓ ପଙ୍ଗପାଳ ପରି ବଡ଼ ବଡ଼ କୀଟମାନେ । ଏହାଛଡ଼ା ଦକ୍ଷିଣ ପୂର୍ବ ୟୁରୋପ ଓ ତାର ପାଖାପାଖି ଏସିଆ ମାଇନର୍ ଅଞ୍ଚଳରେ ଦେଖାଯାଉଥିବା ଏକପ୍ରକାର ବୋଡ଼ାସାପ (Sand Natter)ର ଥୋମଣୀର ଠିକ୍ ଅଗଭାଗରେ ଛୋଟ ଛୋଟ କାତିକୁ ନେଇ ଏକ ଶିଙ୍ଗ ଗଠିତ ହୋଇଥାଏ । ଦେଖିଲେ ଜଣାପଡ଼େ ସତେଯେପରି ଗଣ୍ଡା ମୁଣ୍ଡରେ ଗୋଟିକିଆ ଶିଙ୍ଗ ଥିବାପରି ଗୋଟିଏ ଶିଙ୍ଗ ରହିଛି । ବୁଲଗେରିଆରେ ଦେଖାଯାଉଥିବା ଆଉ ଏକପ୍ରକାର ବୋଡ଼ା ସାପ ମୁଣ୍ଡଅଗରେ ସିଧା ଓ ମୁନିଆ ହୋଇ ଏକ ଶିଙ୍ଗ ଉଠି ରହିଥିବାର ଦେଖାଯାଏ ।



ଶିଙ୍ଗବୋଡ଼ାର ଶିଙ୍ଗଯୁକ୍ତ ମୁଣ୍ଡ



ବିଟିଶ୍ ନାମକ ସାପର ମୁଣ୍ଡ ଅଗରେ ଥିବା ଶିଙ୍ଗ

୫୮. ସାପ ଲାଞ୍ଜ ପାଖରେ ଯେଉଁ କଣ୍ଟା ଥାଏ ତାହା କ'ଣ ?

ପ୍ରତ୍ୟେକ ସାପର ଲାଞ୍ଜ ପାଖରେ କଣ୍ଟା ନଥାଏ । ତାହା କେବଳ ଗୋଟିଏ ପ୍ରକାର ସାପର ଶରୀରରେ ଦେଖାଯାଏ । ସେଇଟି ହେଉଛି ଅଜଗର । ଅଜଗର ସାପମାନଙ୍କର ଶରୀରର ଶେଷଭାଗରେ ଥିବା ମଳଦ୍ୱାରର ଦୁଇପାର୍ଶ୍ୱରେ କଣ୍ଟାପରି ଆକୃତି ଦୁଇଟି ରହିଥାଏ, ତାହା ପଛଗୋଡ଼ର ଅବଶେଷ (Vestigial Hindlimbs) । ଏହା ଅନ୍ୟକୌଣସି ସାପଠାରେ ନଥିବାରୁ ସାପୁଆ କେଳାମାନେ ଅଜଗର ସାପ ଖେଳ ଦେଖାଇ ସାରି ସାପର ଏ କଣ୍ଟାପରି ଆକୃତି ଦେଖାଇ ଅନେକ କଥା କହିଥାଆନ୍ତି । କେତେକ କୁହନ୍ତି ଯେ ଏହାକୁ କାନ ଖରାପ ହୋଇଥିବା ଲୋକର କାନରେ ପୂରାଇ ଦେଲେ ବା କାନ୍ ମଧ୍ୟରେ ସ୍ପର୍ଶ କରାଇଲେ କାନରୋଗ ଭଲ ହୋଇଯିବ । କେତେକ କୁହନ୍ତି ଏ କଣ୍ଟା ଅଂଶ ପିଲାଙ୍କ ଦେହରେ ଛୁଆଁଇଲେ ପିଲାଙ୍କୁ କୌଣସି ରୋଗ ହେବନାହିଁ । ଏସବୁ କଥା ଠିକ୍ ନୁହେଁ । ଏହାର ସତ୍ୟତା କିଛି ନାହିଁ । ଆମେ ଏ କଥାଗୁଡ଼ିକୁ ବିଶ୍ୱାସ କରିବା ଅନୁଚିତ ।

୫୯. ସବୁ ସାପ କ'ଣ ଗାତରେ ରହିବାକୁ ଭଲପାଆନ୍ତି ?

ସାପମାନେ ଜଳ, ସ୍ଥଳ ଓ ବୃକ୍ଷ ସବୁଠାରେ ବାସ କରନ୍ତି । ଲତା ଗୁଳ୍ମ ମଧ୍ୟରେ, ନଦୀ, ପୋଖରୀର ମଧୁର ପାଣିରେ, ସମୁଦ୍ରର ଲୁଣିଆ ପାଣିରେ, ପୁଣି ମରୁଭୂମିର ଉତ୍ତପ୍ତ ବାଲିରେ ଏମାନେ ବାସ କରନ୍ତି । କେତେକ ସାପ ଗଛକୋରଡ଼ରେ ତ ଆଉ କେତେକ ମୂଷାଗାତରେ ନହେଲେ ଉଇହୁଙ୍କା ମଧ୍ୟରେ

ଦେଖାଯାଆନ୍ତି । ମାତ୍ର ଅଳ୍ପ କେତେକ ସାପ ଭୂମିରେ ଗାତ କରି ରୁହନ୍ତି । ଭୂଇଁରେ ବିଳ କରି ବାସ କରୁଥିବା ସାପମାନଙ୍କ ବ୍ୟତୀତ ପ୍ରାୟ ଅଧିକାଂଶ ଜାତିର ସାପ ଉପରକୁ ଚଢ଼ିପାରନ୍ତି । ସବୁ ଜାତିର ସାପ ପହଁରିପାରନ୍ତି ।

ସବୁ ସାପ ଗାତରେ ରୁହନ୍ତି ନାହିଁ । ବସତି ବା ରହିବା ଅନୁସାରେ ସାପମାନଙ୍କୁ ପାଞ୍ଚ ଭାଗରେ ବିଭକ୍ତ କରାଯାଏ । ସେମାନେ ହେଲେ (୧) ସ୍ଥଳଭାଗ ନିବାସୀ, (୨) ଗର୍ତ୍ତନିବାସୀ, (୩) ବୃକ୍ଷନିବାସୀ, (୪) ଜଳନିବାସୀ ଓ (୫) ଉଚ୍ଚପର୍ବତ ନିବାସୀ । ଅବଶ୍ୟ ଏମାନଙ୍କ ମଧ୍ୟରୁ କେତେକଙ୍କ କ୍ଷେତ୍ରରେ ମିଶାମିଶି ଚଳଣି ଦେଖାଯାଏ । ଅର୍ଥାତ୍ କେତେକ ସ୍ଥଳନିବାସୀ ଓ ଜଳନିବାସୀ, ଆଉ କେତେକ ଗର୍ତ୍ତନିବାସୀ ଓ ସ୍ଥଳଭାଗ ନିବାସୀ ଏବଂ ଆଉ କେତେକ ଉଚ୍ଚପର୍ବତ ନିବାସୀ ଓ ସ୍ଥଳନିବାସୀ । ତେବେ ପ୍ରକୃତ ଗର୍ତ୍ତନିବାସୀ ସାପମାନଙ୍କ ଆକୃତିରେ କେତେକ ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ । ସେଗୁଡ଼ିକ ହେଉଛି (୧) ସାନ ସାନ ଆଖି, (୨) ଦନ୍ତଡ଼ା ମୁଣ୍ଡ, (୩) ଅତି ଛୋଟ ଲାଞ୍ଜ ଓ (୪) ଚିକ୍କଣ କାତି । ବୃକ୍ଷନିବାସୀ ସାପମାନଙ୍କ ଆକୃତିଗୁଡ଼ିକ ହେଉଛି (୧) ଖୁବ୍ ତୀକ୍ଷ୍ଣ ଦୃଷ୍ଟିଶକ୍ତି, (୨) ଲମ୍ବ ପତଳା ଶରୀର, (୩) ଲମ୍ବ ଲାଞ୍ଜ, (୪) ରଙ୍ଗୀନ୍ ଶରୀର ଓ (୫) ମୁନିଆ ତିନିକୋଣିଆ ମୁଣ୍ଡ ଇତ୍ୟାଦି । ତେବେ ଗାତ ମଧ୍ୟରେ କେତେକ ସାପ ରହିବାକୁ ଭଲପାଆନ୍ତି । ତେଣୁ ସେମାନଙ୍କ ଗାତ ପାଖରେ ବା ଅଧେ ଗାତ ଭିତରେ ଆଉ ଅଧେ ଗାତ ବାହାରେ ବେଳେବେଳେ କାତି ପଡ଼ିଥିବାର ଦେଖାଯାଏ । ଗାତ ମଧ୍ୟରେ ରହୁଥିବା ସାପକୁ ଗାତ ମଧ୍ୟରୁ ଟାଣି ଆଣିବାକୁ ଚେଷ୍ଟା କଲେ ସାପକୁ ଗାତ ମଧ୍ୟରୁ କାଢ଼ିବା ବହୁତ କଷ୍ଟ ହୁଏ । ତେଲିଆ ସାପ (Blind Snake) ବା ଦୋମୁହା ସାପ



ଖୁବ୍ ଲମ୍ବ ଶରୀର ଥିବା ଧଣ୍ଡ ବା ପାଣିଧଣ୍ଡ ସାପ

*(Typhlops)* ବା ଦୋମୁଣ୍ଡିଆ ସାପମାନେ ମାଟିତଳେ ରୁହନ୍ତି । ମାଟି ଖୋଳିଲାବେଳେ ଏମାନେ ଦେଖାଯାଆନ୍ତି । ମାତ୍ର ପୁଣି ମାଟି ଭିତରେ ପଶିଯିବାକୁ ଚେଷ୍ଟା କରନ୍ତି । ହାଲୁକା ମାଟିରେ ଶୀଘ୍ର ପଶି ଆତ୍ମଗୋପନ କରିବାକୁ ସୁବିଧା ହୁଏ ।

୬୦. ସାପମାନେ କେତେ ବର୍ଷ ପର୍ଯ୍ୟନ୍ତ ବଞ୍ଚିପାରନ୍ତି ?

ସବୁ ସାପ ଏକା ବର୍ଷ ପର୍ଯ୍ୟନ୍ତ ବଞ୍ଚିପାରନ୍ତି ନାହିଁ । ଅର୍ଥାତ୍ ଭିନ୍ନ ଭିନ୍ନ ସାପଙ୍କର ଆୟୁ ଭିନ୍ନ ଭିନ୍ନ । ତେବେ ଏମାନଙ୍କ ଆୟୁକାଳ ଚିଡ଼ିଆଖାନା ବା ପାର୍କମାନଙ୍କ ସ୍ଥାନରେ ଆବଦ୍ଧ ଅବସ୍ଥାରେ ରଖି ଦେଖାଯାଇଛି । ଅଜଗର ୩୦ ବର୍ଷ ପର୍ଯ୍ୟନ୍ତ ବଞ୍ଚିବାର ଦେଖାଯାଇଛି । ଆଫ୍ରିକୀୟ ଅଜଗର ଫିଲାଡ଼େଲଫିଆ ଚିଡ଼ିଆଖାନାରେ ୧୯ବର୍ଷ ୧୧ମାସ (ହାରାହାରି ୨୦ବର୍ଷ), ଥୂକ ନାଗ ଚିକାଗୋ ପ୍ରାଣୀ ଉଦ୍ୟାନରେ ୨୨ବର୍ଷରୁ ଅଧିକ, କଳା ଓ ଧଳା ମିଶା ନାଗ ସାନ୍‌ଡ଼ିଏଗୋ ଚିଡ଼ିଆଖାନାରେ ୨୯ବର୍ଷରୁ ଅଧିକ ବଞ୍ଚିବାର ଦେଖାଯାଇଛି । ତେବେ ମୋଟାମୋଟି ସାପମାନଙ୍କର ହାରାହାରି ଆୟୁକାଳ ୨୦ବର୍ଷ ।

୬୧. ସାପମାନଙ୍କର ଅଣ୍ଡା ଦେଖିବାକୁ କେମିତି ?

ସାପମାନେ ସାଧାରଣତଃ ଅଣ୍ଡାପ୍ରସବୀ । ଖୁବ୍ କମ୍ ସାପ ଛୁଆପ୍ରସବୀ । ତେବେ ସାପମାନଙ୍କର ଅଣ୍ଡାର ଆକାର ୧୦ମିଲିମିଟରରୁ ଆରମ୍ଭ କରି ୧୨୦ମିଲିମିଟର ବା ୧୨ସେଣ୍ଟିମିଟର ପର୍ଯ୍ୟନ୍ତ ହୋଇଥାଏ । ଅଣ୍ଡାର ବର୍ଣ୍ଣ ଧଳା ବା ଇଷତ୍ ହଳଦିଆ ଅଥବା ପାଉଁଶିଆ । ଅଧିକାଂଶ ଅଣ୍ଡାର ଆକାର ଲମ୍ବା ଅଣ୍ଡାକାର ଅର୍ଥାତ୍ କୁକୁଡ଼ା ଅଣ୍ଡାପରି ଆକାର; ମାତ୍ର ଆଉ କେତେକଙ୍କ ଅଣ୍ଡା ବଲ୍ ବା ପେଣ୍ଡୁପରି ଗୋଲ । ସାପମାନେ ସାଧାରଣତଃ ଗୋଟିଏରୁ ଆରମ୍ଭ କରି ୧୦୦ (ଏକଶହ) ପର୍ଯ୍ୟନ୍ତ ଅଣ୍ଡା ଦେଇପାରନ୍ତି । କିନ୍ତୁ ଅଧିକାଂଶ ସାପମାନଙ୍କ ଅଣ୍ଡା ଦେବା ସଂଖ୍ୟା ହେଉଛି ଛଅରୁ ବାର ପର୍ଯ୍ୟନ୍ତ । ବେଳେବେଳେ ଥରକରେ କେତେଗୁଡ଼ିଏ ଅଣ୍ଡାଦେଲେ ସେଗୁଡ଼ିକ ପରସ୍ପରକୁ ଲାଗିଲାଗି ରହିଥିବାର ଦେଖାଯାଏ । ସାପମାନଙ୍କର ଅଣ୍ଡାଦେବା ସ୍ଥାନ ହେଉଛି ମାଟିତଳେ ଥିବା ଗାତ, ପତ୍ରକାଠି ତଳେ, ଗଛ ଗାତରେ, ଉଇହୁଙ୍କାରେ, ଭଙ୍ଗା କୋଠାବାଡ଼ିରେ ଏବଂ କେତେକ ଇଟାପଥର ତଳେ ଥିବା ଗାତ ମଧ୍ୟରେ । ଏମାନେ ଅଣ୍ଡାଗୁଡ଼ିକ ଖୋଲାସ୍ଥାନରେ ଆଦୌ ଦିଅନ୍ତି ନାହିଁ । ସାଧାରଣତଃ ଭଲଭାବରେ ଲୁଚି ରହିପାରୁଥିବା ସ୍ଥାନରେ ଅଣ୍ଡା ଦେଇଥାଆନ୍ତି । ବିଶେଷ କରି ନିରାପଦ ଅବ୍ୟବହୃତ ସ୍ଥାନ ହିଁ ସାପମାନଙ୍କର ଅଣ୍ଡାଦେବାର ପ୍ରିୟ ସ୍ଥାନ ।

୬୨. ସାପମାନେ କ'ଣ ପକ୍ଷୀମାନଙ୍କ ପରି ଅଣ୍ଡା ଉଷୁମାନ୍ତି ?

ଅଧିକାଂଶ ସାପ ଅଣ୍ଡା ଦେଇସାରି ଅଣ୍ଡାଦେବା ସ୍ଥାନ ଛାଡ଼ି ଚାଲିଯାଆନ୍ତି । ଅଣ୍ଡାଗୁଡ଼ିକ ସେମିତି ଆପେଆପେ ଉଷୁମ ପାଇ ଫୁଟି ସେଥିରୁ ଛୁଆ ବାହାରନ୍ତି । କିନ୍ତୁ ଖୁବ୍ କମ୍ କେତେକ ସାପମାନେ ଅଣ୍ଡାଗୁଡ଼ିକୁ ଉଷୁମାଇଥାଆନ୍ତି । ଉଦାହରଣ ସ୍ୱରୂପ ଅଜଗର ସାପ । ଅଜଗର ସାପ ଅଣ୍ଡା ଦେଇସାରି ଅଣ୍ଡା ଚାରିପଟେ ଗୁଡ଼େଇ ହୋଇ ଅଣ୍ଡାଗୁଡ଼ିକୁ ଜଗିରହିବା ସହ ଉଷୁମାଇବାର ଦେଖାଯାଇଥାଏ । ଅହିରାଜ ସାପ କାଠିପତ୍ର ଓ ମାଟି ଇତ୍ୟାଦି ଆଣି ଏକାଠି କରି ଦୁଇତାଲା ବସା ବାନ୍ଧେ । ବସାତିଆରି କରିସାରିବା ପରେ ତଳ ତାଲାରେ ଅଣ୍ଡାଗୁଡ଼ିକ ଦେଇ କାଠିକୁଟା ମାଟି ମଧ୍ୟରେ ଲୁଚାଇରଖେ ଓ ଉପର ତାଲାରେ ସେ ନିଜେ ଅଣ୍ଡାଗୁଡ଼ିକୁ ଜଗି ରୁହେ । ଛୁଆଗୁଡ଼ିକ ଅଣ୍ଡାରୁ ବାହାରିବା ପର୍ଯ୍ୟନ୍ତ ମାଆ ଅଣ୍ଡାଗୁଡ଼ିକୁ ଜଗି ରଖିଥାଏ ।

୬୩. ସାପ କାତି କେମିତି ଛାଡ଼େ ?

ସବୁ ସାପମାନଙ୍କ ଦେହରେ କାତି ଥାଏ । କାତିଗୁଡ଼ିକ ଚିକ୍କଣ ଓ ଶୁଖିଲା; ମାତ୍ର ଲାକୁଆ ନୁହେଁ । ଏହା ଜଳ ନିରୋଧକ । ମଝିରେ ମଝିରେ ବା ସାମୟିକ ଭାବରେ ସାପମାନଙ୍କ ଦେହରୁ କାତି ଛାଡ଼ିଥାଏ । ପ୍ରାୟ ମାସେ ବା ଦୁଇମାସ ବ୍ୟବଧାନରେ ଏହା ଘଟିଥାଏ । ଅଧିକାଂଶ ସାପମାନଙ୍କ ଦେହରୁ କାତି ମୁଣ୍ଡରୁ ଆରମ୍ଭ କରି ଲାଞ୍ଜ ପର୍ଯ୍ୟନ୍ତ ଗୋଟିକିଆ ଭାବରେ ଛାଡ଼ିଥାଏ । କିନ୍ତୁ ଅଜଗର କ୍ଷେତ୍ରରେ କାତି ଝିଟିପିଟି ପରି ଖଣ୍ଡି ଖଣ୍ଡିକିଆ (Pieces) ହୋଇ ଛାଡ଼ିଥାଏ ।

କାତିଛାଡ଼ିବା ସମୟ ଆସିଲେ ସାପ କିଛି ଖାଏନାହିଁ । ଯଦିବା ଖାଏ ଖୁବ୍ କମ୍ ଖାଏ । ଚଳଚଞ୍ଚଳ ରୁହେ ନାହିଁ । ଖୁବ୍ ମାନ୍ଦା ହୋଇଯାଏ । ମୁଣ୍ଡଟିକୁ ଭୂଇଁ ଉପରେ ବା ପଥର ଆଦି ସ୍ଥାନରେ ଘଷିବାକୁ ଆରମ୍ଭ କରେ । ତାପରେ କାତି ମୁଣ୍ଡପାଖରେ ଥିବା ମୁହଁ ପାଖରୁ ଫାଟି ଧୀରେ ଧୀରେ ଛାଡ଼ିବାକୁ ଆରମ୍ଭ କରେ । ତାପରେ ଲାଞ୍ଜ ପର୍ଯ୍ୟନ୍ତ ଫାଟିଯାଇ ସମୁଦାୟ ଶରୀରରୁ ଛାଡ଼ିଯାଏ । ତେବେ ପୁରୁଣା ଚମଡ଼ା ଛାଡ଼ିବା ପୂର୍ବରୁ ନୂଆଚମଡ଼ା ତିଆରି ହୋଇଯାଇଥାଏ । କାତିଛାଡ଼ିବା ପରେ ସାପ ସତେଜ, ଚଞ୍ଚଳ ଓ ବେଶ୍ ଉଜ୍ଜ୍ୱଳ ଦେଖାଯାଏ ।

୬୪. ସାପ ଆଖିରେ କ'ଣ କାତି ରହିଥାଏ ?

ଆଖିକୁ ଢାଙ୍କିବା ପାଇଁ ଆମର ଯେମିତି ଆଖିପତା (Eyelid) ଅଛି, ସାପର ତାହା ନାହିଁ । ଢାଙ୍କୁଣୀ ରୂପେ କାର୍ଯ୍ୟକରିବା ପାଇଁ ସାପମାନଙ୍କ ଆଖିରେ କାତି ରହିଥାଏ । ତେବେ ଆଖି ଉପରେ ଥିବା କାତି ହେଉଛି ସ୍ୱଚ୍ଛ । ଇଂରାଜୀରେ ତାହାକୁ ବ୍ରିଲ୍ (Brille) ବୋଲି କୁହାଯାଏ । ଏ କାତି ସ୍ୱଚ୍ଛ । ଆକାର ହେଉଛି ଥାଳିପରି ଚଟକା । ଦେହରୁ କାତି ଠିକ୍ ଛାଡ଼ିବା ପୂର୍ବରୁ ଆଖି ଉପରର କାତି ଅସ୍ୱଚ୍ଛ ଦେଖାଯାଏ । ସମୁଦାୟ ଶରୀରର କାତି ମଧ୍ୟ ଅତି ଶୁଖିଲା ଦେଖାଯିବା ସହ ମସୃଣତା କମିଯାଏ । ଚିକ୍‌ଚିକ୍ କରେନାହିଁ । ବର୍ଣ୍ଣ ଫିକା ପଡ଼ିଯାଏ । ଜଣାପଡ଼େ ସତେଯେପରି ସାପ ଦେହର କାତିରେ ଜୀବନ ନାହିଁ । କେତେକ କୁହନ୍ତି ଏପରି ଅବସ୍ଥାରେ ସାପ ମରିଯାଏ ବା ମରିଯିବାର ଆଭାସ ବୋଲି । କିନ୍ତୁ ତାହା ଠିକ୍ କଥା ନୁହେଁ । କାତି ଛାଡ଼ିବାର ଏସବୁ ହେଉଛି ପୂର୍ବ ଲକ୍ଷଣ । କାତି ଛାଡ଼ିଯିବା ପରେ ପୁଣି କାତି ଚିକ୍‌ଚିକ୍ ଦେଖାଯାଏ ଓ ସାପ ଚଳଚଞ୍ଚଳ ହୋଇଉଠେ । ପତା ନଥିବାରୁ ଆଖିରେ ପଲକ ପଡ଼େନାହିଁ । ଏକ ଲୟରେ ସାପ ଅନେଇଥାଏ । ଏଥିପାଇଁ ଓ କର୍ଣ୍ଣରନ୍ଧ୍ର ନଥିବାରୁ ସାପର ନାମ ଚକ୍ଷୁଶ୍ରବା ବୋଲି ପୁରାଣକାରମାନେ ଭୁଲରେ ଦେଇଥିଲେ ।

୬୫. କାତି ଛାଡ଼ିବା ସମୟରେ ସାପକୁ କ'ଣ ଦେଖାଯାଏ ନାହିଁ ?

କାତିଛାଡ଼ିବା ସମୟ ଆସିଲେ ସମୁଦାୟ ଶରୀରର କାତି ବିବର୍ଣ୍ଣ ହୋଇଯାଏ । କାତିରେ ଜୀବନ ଥିଲା ପରି ଦେଖାଯାଏ ନାହିଁ । ଆଖି ଉପର କାତି ମଧ୍ୟ ସ୍ୱଚ୍ଛ ଦେଖାନଯାଇ ଅସ୍ୱଚ୍ଛ ହୋଇଯାଏ । ଜଣାପଡ଼େ ସତେଯେପରି ସାପର ଆଖି ନାହିଁ ବା ସାପକୁ ଦେଖାଯାଏ ନାହିଁ ବୋଲି । ଏ ସମୟରେ ବାସ୍ତବିକ ସାପଗୁଡ଼ିକ ମାନ୍ଦା ହୋଇଯାଆନ୍ତି ବୋଲି ଅନେକ ସାପଗୁଡ଼ିକୁ ଅନ୍ଧ ବୋଲି କୁହନ୍ତି । କିନ୍ତୁ ତାହା ସତରେ ଠିକ୍ କଥା ନୁହେଁ । ସାପ ଦେଖିପାରେ; ମାତ୍ର ତା ଆଖି ଉପର କାତିର ସ୍ୱଚ୍ଛତା କମିଯାଏ ।

୬୬ ସବୁ ସାପମାନଙ୍କର କ'ଣ ଆଖି ରହିଥାଏ ?

ସବୁ ସାପମାନଙ୍କର ଆଖି ଥାଏ । ତେବେ ଅଧିକାଂଶ ସାପମାନଙ୍କର ଆଖି ଦେଖିବାରେ ଖୁବ୍ ସାହାଯ୍ୟ କରେ । କିନ୍ତୁ ଗାର୍ତ୍ତ ମଧ୍ୟରେ ରହୁଥିବା ସାପମାନଙ୍କର ଆଖି ଖୁବ୍ ଛୋଟ । ଆଉ କେତେକ ସାପଙ୍କ ଆଖି ଦେଖିବାରେ

ଏତେ ତୀକ୍ଷ୍ଣ ନୁହେଁ ବା କାର୍ଯ୍ୟକ୍ଷମ ନୁହେଁ । ଦେଖାଯାଇଛି ଯେଉଁ ସାପମାନଙ୍କ ଆଖିର ପୁଅ (Pupil) ଗୋଲ, ସେ ସାପମାନେ ଚେପ୍‌ଟା ପୁଅଥିବା ସାପମାନଙ୍କ ଆଖି ଅପେକ୍ଷା ଖୁବ୍ ଚଳଚଞ୍ଚଳ । ଗୋଲ ପୁଅଥିବା ସାପମାନଙ୍କର ଦୃଷ୍ଟିଶକ୍ତି ମଧ ଖୁବ୍ ପ୍ରଖର । ଅର୍ଥାତ୍, ସେମାନେ ଦୂର ଜିନିଷ ଭଲଭାବରେ ଦେଖିପାରନ୍ତି । ବୃକ୍ଷ ସର୍ପମାନେ ବା ଲାଉଡ଼ଙ୍କିଆ ସାପଗୁଡ଼ିକର ଦୃଷ୍ଟିଶକ୍ତି ଖୁବ୍ ପ୍ରଖର । ତେଣୁ ଏପ୍ରକାର ସାପମାନେ ଗତି କରୁନଥିବା ଶିକାରମାନଙ୍କୁ ବି ସହଜରେ ଜାଣିପାରନ୍ତି ।

## ୬୭. ସାପମାନଙ୍କ ମୁଣ୍ଡରେ ନାକ ଥାଏ କି ?

ପ୍ରତ୍ୟେକ ସାପ ମୁଣ୍ଡରେ ଦୁଇକଡ଼କୁ ଗୋଟିଏ କରି ଦୁଇଟି ନାକପୁଡ଼ା ରହିଥାଏ । ଏ ନାକପୁଡ଼ା ମୁଖ୍ୟତଃ ଶ୍ୱାସକ୍ରିୟାରେ ସାହାଯ୍ୟ କରେ । ନାକପୁଡ଼ା ଦେଇ ପବନ ଖୁବ୍ ଜୋର୍‌ରେ ବାହାରିବା ଯୋଗୁ ଫଁ ଫଁ ଶବ୍ଦ ସୃଷ୍ଟି ହୋଇଥାଏ । ଏ ଶବ୍ଦ ଯୋଗୁ ସାପ ଭୟଙ୍କର ଲାଗିଥାଏ । ଜଳରେ ବାସ କରୁଥିବା ସାପମାନଙ୍କର ନାସିକାରନ୍ଧ୍ର ଲମ୍ବିତ ନାସିକାର ଅଗରେ ଥାଏ । ଅନ୍ୟ ସବୁ ସାପର ନାସାରନ୍ଧ୍ର ମୁଣ୍ଡର ଦୁଇକଡ଼ରେ ଅବସ୍ଥିତ । ଜଳରେ ରହୁଥିବା ସାପମାନଙ୍କର ସମଗ୍ର ଦେହ ଜଳରେ ବୁଡ଼ି ରହୁଥିଲେ ମଧ ନାସିକାର ଅଗ୍ରଭାଗ ପାଣି ଉପରକୁ ବାହାରକରି ସେମାନେ ନିଶ୍ୱାସ ପ୍ରଶ୍ୱାସ ନେଇପାରନ୍ତି । ଆହୁରି ମଧ ସମୁଦ୍ରରେ ବାସ କରୁଥିବା ସାପମାନଙ୍କର ଫୁସ୍‌ଫୁସ୍ ଯନ୍ତ୍ର ବଡ଼ ହୋଇଥିବାରୁ ସେମାନେ ପାଣିତଳେ ଘଣ୍ଟାଏ ଦୁଇଘଣ୍ଟା ସମୟ ଅନାୟାସରେ ରହିପାରନ୍ତି । ଭୂମିର ସାପ ପାଣିରେ ପଶିଲେ ପହଁରେ; କିନ୍ତୁ ସାମୁଦ୍ରିକ ସାପ ଭୂମି ଉପରେ ନିଃସହାୟ ।

## ୬୮. ସାପ ଅଣ୍ଡା ଭିତରୁ ଛୁଆ କେମିତି ବାହାରନ୍ତି ?

ଅଧିକାଂଶ ସାପ ଅଣ୍ଡାଗୁଡ଼ିକୁ ଖୁବ୍ ନିବୃତ ସ୍ଥାନରେ ଦେଇଥାଆନ୍ତି । ସେମାନେ ଶତ୍ରୁର ସ୍ଥାନ ସତେଯେମିତି ଠଉରେଇ ପାରନ୍ତି ! ତେଣୁ ଶତ୍ରୁ ବା ଅନ୍ୟାନ୍ୟ ଜୀବଜନ୍ତୁ ବେଶୀ ଚଳପ୍ରଚଳ ହେଉନଥିବା ସ୍ଥାନ ସେମାନେ ବାଛି ନେଇ ଅଣ୍ଡା ଦେଇଥାଆନ୍ତି । ଆଉ ଅଣ୍ଡା ଦେଇସାରି ସେ ସ୍ଥାନ ଛାଡ଼ିଦେଇ ଚାଲିଯାଆନ୍ତି । ଅଣ୍ଡାଗୁଡ଼ିକ ନିର୍ଦ୍ଦିଷ୍ଟ ସମୟ ମଧରେ ଉଷୁମ ହୋଇଥାଏ । ଧୀରେ ଧୀରେ ଅଣ୍ଡା ଭିତରର ଛୁଆ ବଡ଼ ହୋଇଥାଆନ୍ତି । ଛୁଆ ଅଣ୍ଡା ମଧରେ ଟାଇଟ୍ ହୋଇ ରହିବା ପର୍ଯ୍ୟନ୍ତ ବଡ଼ ହୁଅନ୍ତି । ଛୁଆ ମୁହଁର ସାମ୍ନାରେ ଏକ ମୁନିଆ କାତି ଅଣ୍ଡା ଭିତରେ ଥିବାବେଳେ ତିଆରି ହୋଇଥାଏ । ଏ ଅଂଶ ବା

କାତି (Shield)କୁ କୁହାଯାଏ ଅଣ୍ଡାଦାନ୍ତ (Egg Tooth) । ଏ ଅଣ୍ଡାଫଟା କାତି ଅଣ୍ଡାଫଟା ଅଂଶ (Egg-burster) ଭାବରେ କାର୍ଯ୍ୟକରେ । ଏହି ଅଣ୍ଡାଦାନ୍ତ ଦ୍ୱାରା ଛୁଆ ଅଣ୍ଡାଟିକୁ ଫଟାଇ ବାହାରକୁ ଚାଲିଆସେ । ବାହାରକୁ ଆସିବାର କିଛି ସମୟ ପରେ ପରେ ଏ ଅଣ୍ଡାଦାନ୍ତ କାତିଟି ମୁଣ୍ଡରୁ ଝଡ଼ିପଡ଼େ ବା ଖସିଯାଏ । ଧୀରେ ଧୀରେ ଯାତାୟାତ କରି ମାଆ ପରି ଶିକାରରେ ଲାଗିପଡ଼େ । କିନ୍ତୁ ଅଣ୍ଡା ଫୁଟାଇ ବାହାରିବା ପରେ ଛୁଆ ସାପମାନେ ବସା ପାଖରେ ପ୍ରାୟ ଗୋଟିଏ ଦିନ ପାଖାପାଖି ରହିବା ପରେ ଚଳପ୍ରଚଳ କରିଥାଆନ୍ତି । ତେବେ ଛୁଆଗୁଡ଼ିକ ଆକାରରେ ଛୋଟ ହେଲେ ବି ଦେଖିବାକୁ ମାଆ ବାପାଙ୍କ ପରି ।

୬୯. ସାପମାନେ ବେଳେବେଳେ ଗିଳିଥିବା ଜୀବକୁ ବାନ୍ତି କରନ୍ତି କି ?

ସାପମାନଙ୍କ ଉପର ଓ ତଳ ପାଟି ହୁଗୁଳା ଭାବରେ ଲାଗିଥିବା ଯୋଗୁ ସେମାନେ ପାଟିର ଆକାର ଅପେକ୍ଷା ବେଶ୍ ବଡ଼ ବଡ଼ ଜୀବଜନ୍ତୁଙ୍କୁ ଗିଳିପାରନ୍ତି ବା ଖାଇପାରନ୍ତି । ଆଉ ମଧ ସାପମାନଙ୍କ ପାଟି ମଧ୍ୟରେ ଥିବା ଲାଳଗ୍ରନ୍ଥି ଗୁଡ଼ିକ ବେଶ୍ ବଡ଼ । ତେଣୁ ଶିକାରକୁ ଗିଳିବା ସହଜ ହୋଇଥାଏ । ଅର୍ଥାତ୍ ଶିକାର ପାଇବା କ୍ଷଣି ତାହା ପାଟି ମଧ୍ୟରେ ପଶିବାବେଳେ ପାଟିର ଲାଳ ଶିକାର ଚାରିପଟେ ଲାଗି ସମ୍ପୂର୍ଣ୍ଣ ଜୀବଟି ଲାଳୁଆ ହୋଇଯାଏ । ଫଳରେ ଗିଳିବା ଅନାୟାସରେ ଶୀଘ୍ର ହୋଇଥାଏ । ତେବେ ବେଳେବେଳେ ଗିଳୁଥିବା ବେଳେ ଭୟ ବା ଆଘାତ ପାଇଲେ ପାଟିରୁ କାଢ଼ି ପକାଏ । ଭୁଲରେ ସେଥିପାଇଁ କିଛିଲୋକ କହିଥାଆନ୍ତି ଯେ ଅଜଗର ସାପ ବାନ୍ତି କରିପକାଏ ବୋଲି । ଆଉ ବାନ୍ତିରେ ଲାଳ ବାହାରିଥାଏ । କିନ୍ତୁ ଘଟଣା ହେଉଛି ଯେ ଖାଇବା ବା ଗିଳିବା ବେଳେ ଲାଳ ବେଶୀ ମିଶିଯାଇଥିବାରୁ ଭୟରେ ଶିକାରଟି ବାହାରିଯିବା ବେଳେ ଶିକାରଟି ଲାଳରେ ଲଟପଟ ହୋଇଥାଏ । ତେବେ ଶିକାରଟି ବାହାରିବା ବେଳେ ମରିଯାଇଥାଏ ବା ଦରମଲା ଅବସ୍ଥାରେ ରହିପାରେ ।

୭୦. ସାପମାନେ ପାଣି ଓ କ୍ଷୀର ପିଅନ୍ତି କି ?

ପ୍ରାୟ ପ୍ରତ୍ୟେକ ସାପ ମଝିରେ ମଝିରେ ପାଣି ପିଇବାକୁ ଦରକାର କରନ୍ତି । କିନ୍ତୁ ଅଧିକାଂଶ ସାପ ଥଣ୍ଡା ବାତାବରଣରେ ଥିଲେ ବା ରଖାଯାଇଥିଲେ କିଛିଦିନ ପାଣି ଆବଶ୍ୟକ ନକରି ବଞ୍ଚିପାରନ୍ତି । ତେବେ ମଝିରେ ମଝିରେ ଲୋକକଥା ଶୁଣାଯାଏ ଯେ ସାପମାନେ ଆସି ଗାଈପହ୍ନାରୁ ଶୋଷି କ୍ଷୀର ପିଅନ୍ତି ବୋଲି । ଏ କଥାରେ କୌଣସି ସତ୍ୟତା ନାହିଁ । କେବଳ ଗାଈ ନୁହେଁ,

ଅନ୍ୟକୌଣସି ଗୋମେଷାଦି ପ୍ରାଣୀଙ୍କ ଚୀରରୁ ଶୋଷି କ୍ଷୀର ପିଇବା କଥା ଠିକ୍ ନୁହେଁ । ମୋଟାମୋଟି ସାପମାନେ କମ୍ ପାଣି ପିଉଥିବାରୁ ବା ସେତେ ପରିମାଣରେ ପାଣି ଆବଶ୍ୟକ ହେଉନଥିବାରୁ ସେମାନେ ମଧ୍ୟ ତରଳ ପରିଶ୍ରା କରନ୍ତି ନାହିଁ । ସେମାନଙ୍କର ଝାଳଗ୍ରନ୍ଥି ମଧ୍ୟ ନଥାଏ । ମଳଦ୍ୱାର ମଧ୍ୟ ଦେଇ କେବଳ ଟାଣ ବା କଠିନ ଆକାରରେ ମଳତ୍ୟାଗ ସେମାନେ କରିଥାଆନ୍ତି । ଜଳ ମୁଖ୍ୟତଃ ସେମାନେ ଶିକାର ଦେହରୁ ପାଇଥାଆନ୍ତି ।

୭୧. ସାପମାନେ ନଖାଇ ନପିଇ କ'ଣ ବଞ୍ଚିପାରନ୍ତି ?

ବଞ୍ଚିବା ପାଇଁ ପ୍ରତ୍ୟେକ ପ୍ରାଣୀ ଓ ଉଦ୍ଭିଦର ଖାଦ୍ୟ ଓ ପାନୀୟ ଦରକାର । ଖାଦ୍ୟ ବିନା ବଞ୍ଚିବା ସମ୍ଭବ ନୁହେଁ । ତେବେ ପ୍ରତ୍ୟେକ ସାପ କିଛିଦିନ ଖାଦ୍ୟବିନା ବଞ୍ଚିବା ସମ୍ଭବ ହୋଇଥାଏ । ଏପରିକି ଦେଖାଯାଇଛି ଯେ ବଡ଼ ବଡ଼ ଅଜଗର ସାପ ଦୁଇବର୍ଷ ଖାଦ୍ୟ ବିନା ବଞ୍ଚିପାରିଛି । ଖାଦ୍ୟ ନଖାଇ ବେଶ୍ କିଛିଦିନ ବା ଅନେକ କିଛି ବର୍ଷ ବଞ୍ଚିବା ସମ୍ଭବପର ନୁହେଁ ।

୭୨. ସାପମାନେ କ'ଣ ଫଳମୂଳ ଖାଆନ୍ତି ?

ସାପମାନେ ମାଂସାସୀ ଓ ପୂର୍ଣ୍ଣଭକ୍ଷୀ (Catholic in diet) । ସେମାନେ ଘୁଷୁରି, ହରିଣ, ମୃଗ ପରି ବଡ଼ ବଡ଼ ପ୍ରାଣୀ, ମୂଷା, ବେଙ୍ଗ, ଝିଟିପିଟି, ବିଭିନ୍ନ ପକ୍ଷୀ, ମେରୁଦଣ୍ଡୀ ପ୍ରାଣୀମାନଙ୍କ ଅଣ୍ଡା, ବିଭିନ୍ନ ପ୍ରକାର କୀଟପତଙ୍ଗ, ଉଇ, ଝିଣ୍ଟିକା, କୀଟପତଙ୍ଗମାନଙ୍କର ଲାର୍ଭା ଓ ପ୍ୟୁପା, ବୁଢ଼ିଆଣୀ, ବିଛା, ତେଲୁଣିପୋକ, ଜିଆ, ଗେଣ୍ଡା ଓ ଶାମୁକା, ଛୋଟ ଛୋଟ କୁମ୍ଭୀର, କଇଁଚ ଓ ସେମାନଙ୍କ ଅଣ୍ଡା ଆଦି ଛୋଟ ଛୋଟ ପ୍ରାଣୀଙ୍କୁ ଖାଦ୍ୟ ଭାବରେ ଗ୍ରହଣ କରନ୍ତି । ତେବେ ଫଳମୂଳ କଥା ଶୁଣାଗଲେ ବି ବାସ୍ତବ କ୍ଷେତ୍ରରେ ଏହା ଦେଖାଯାଏ ନାହିଁ । ଏମାନଙ୍କ ପ୍ରକୃତି ହେଉଛି ମାଂସାସୀ ଅର୍ଥାତ୍, ବିଭିନ୍ନ ପ୍ରାଣୀମାନଙ୍କୁ ଖାଇବା ହିଁ ସାପମାନଙ୍କର ଖାଦ୍ୟାଭ୍ୟାସ ।

୭୩. ସାପମାନଙ୍କର ଶତ୍ରୁ ଅଛନ୍ତି ?

ସାପମାନଙ୍କର ବେଶ୍ ଅନେକ ଶତ୍ରୁ ଅଛନ୍ତି । ଅବଶ୍ୟ ଜଣାପଡ଼େ ନାହିଁ କି ବେଶି ନଜରକୁ ଆସେନାହିଁ । ଏମାନଙ୍କର ପ୍ରଧାନ ଶତ୍ରୁ ହେଉଛନ୍ତି ମନୁଷ୍ୟ । ଦେଖିବାମାତ୍ରେ ପିଟି ପିଟି ମାରିପକାନ୍ତି । ଆଉ କେତେକ ରାସ୍ତାରେ ଯିବା ଆସିବା ସମୟରେ ଗାଡ଼ି ଚକତଳେ ଚାପିହୋଇ ମରିଯାଆନ୍ତି । ଏସବୁ ଛଡ଼ା ଅନ୍ୟ ଶତ୍ରୁମାନେ ହେଉଛନ୍ତି ପେଚାପରି କେତେକ ପକ୍ଷୀ, କେତେକ ଷ୍କର୍କ

(Stork), ଛଞ୍ଚାଣ, ଚିଲ, କୋଚିଲାଖାଇ (Hornbill), ଇଗଲ୍, ନେଉଳ, କଟାଶ (Wild cat) ଓ ଓଧ (Otter) ପରି ସ୍ତନ୍ୟପାୟୀ ପ୍ରାଣୀମାନେ । ତା'ଛଡ଼ା ସରୀସୃପ ଜଗତର ବଡ଼ ଗୋଧି (Monitor Lizard)ମାନଙ୍କର ପ୍ରିୟ ଖାଦ୍ୟ ହେଉଛି ସାପ ଓ ସେମାନଙ୍କ ଅଣ୍ଡା । ନେଉଳ ବେଶୀ ପରିମାଣରେ ସାପ ନ ଖାଇଲେ ମଧ୍ୟ ଆଫ୍ରିକୀୟ ନେଉଳମାନେ ବେଳେବେଳେ ସାପମାନଙ୍କୁ ମାରି ଖାଇଥାଆନ୍ତି । ସେକ୍ରେଟେରୀ ପକ୍ଷୀ (Secretary Bird) ଓ ଭୂଇଁ କୋଚିଲାଖାଇ ପକ୍ଷୀ (Ground Hornbill)ମାନେ ଶିକାରୀପକ୍ଷୀ ହିସାବରେ ସାପମାନଙ୍କୁ ଶିକାର କରିବାର ଦେଖାଯାଏ । ଅବଶ୍ୟ ସେ ଥିବା ସ୍ଥାନରେ ଅନ୍ୟାନ୍ୟ ପ୍ରାଣୀ ବେଶୀ ପରିମାଣରେ ଖାଦ୍ୟ ଭାବରେ ମିଳୁନଥିଲେ ସେକ୍ରେଟେରୀ ପକ୍ଷୀ ଓ ଭୂଇଁ କୋଚିଲାଖାଇ ପକ୍ଷୀ ହିଁ ସାପ ଶିକାର କରି ଖାଦ୍ୟ ଭାବରେ ବ୍ୟବହାର କରିଥାଆନ୍ତି ।

କେବଳ ସେତିକି ନୁହେଁ, ଅହିରାଜ ଓ ଆଉ କେତେକ ସାପମାନେ ସାପମାନଙ୍କୁ ବି ଖାଇଯାଆନ୍ତି । ବିଶେଷ କରି ଅହିରାଜର ପ୍ରିୟ ଖାଦ୍ୟ ଅନ୍ୟ ସାପମାନେ । ସେଥିପାଇଁ ଏ ସାପ 'ସାପଖିଆ ସାପ' ଭାବରେ ଜଣାଶୁଣା । ତେବେ ନେଉଳ ବହୁତ ଚାଲାକ ହେଲେ ବି ଅଜଗର ପରି ସାପମାନେ ନେଉଳକୁ ବି ଖାଇବାର ଦେଖାଯାଏ । ପରସ୍ପର ଉପରେ ନିର୍ଭରଶୀଳ ହିଁ ପରିବେଶରୁ ଜଣାଯାଏ । ଖାଦ୍ୟ ପାଇଁ ସମସ୍ତ ପ୍ରାଣୀ ଅନ୍ୟ ଉପରେ ନିର୍ଭର କରିଥାଆନ୍ତି । ତେଣୁ ପ୍ରାକୃତିକ ଭାରସାମ୍ୟ (Ecological Balance) ଆମର ଠିକ୍ ରହିଥାଏ । କୌଣସି ପ୍ରାଣୀ ବହୁତ ବଢ଼ିଯାଆନ୍ତି ନାହିଁ କି କୌଣସି ପ୍ରାଣୀ ବହୁତ କମିଯିବା କଥା ନୁହେଁ । ଖାଦ୍ୟ ଓ ଖାଦକର ସମ୍ପର୍କ ହିଁ ପରିବେଶରେ ଏକ ସାଧାରଣ ନିୟମ । ତେବେ ମୋଟାମୋଟି ସାପକୁ ଆମେ ବେଶି ଡରୁଥିଲେ ମଧ୍ୟ ମଣିଷ ଛଡ଼ା ସାପମାନଙ୍କର ଶତ୍ରୁ ଅନେକ ।

### ୭୪. ସାପ ଶରୀରରେ କ'ଣ ଶିଶ୍ନ ଥାଏ ?

ସାପମାନଙ୍କଠାରେ ଶିଶ୍ନ (Penis) ଥାଏ । ତେବେ ଏ ଶିଶ୍ନ ପୁରୁଷ ସାପମାନଙ୍କଠାରେ ଦେଖାଯାଏ । ଏ ଶିଶ୍ନ ଦୁଇଟି ଲାଞ୍ଜ ପାଖଆଡ଼କୁ ରହିଥାଏ । ଏହାକୁ ଅବଶ୍ୟ ଅର୍ଦ୍ଧଶିଶ୍ନ (Hemipenis) ବୋଲି କୁହାଯାଏ । କେତେକ ଗୋଟିଏ ଶିଶ୍ନ ଦୁଇଫାଳିଆ ହୋଇଛି ବୋଲି ମତ ଦିଅନ୍ତି । ମୋଟାମୋଟି ଲାଞ୍ଜପାଖରୁ ମଳଦ୍ୱାର ପାଖାପାଖି ସ୍ଥାନରେ ଦୁଇଟି ମାଂସଭଳି ଆକୃତି ଯାହା ଦେଖାଯାଏ ତାହା ହିଁ ହେଉଛି ସାପର ଶିଶ୍ନ । ମିଳନ ସମୟରେ ଅଣ୍ଡିରାସାପ ମାଈ ସାପ

ଦେହରେ ପଛପାଖ ଶରୀରକୁ ଗୁଡ଼େଇ ହୋଇ ବାମ ବା ଡାହାଣ ଶିଶ୍ନକୁ ମାଈର ଜନନେନ୍ଦ୍ରିୟ ମଧ୍ୟରେ ପୁରାଇ ଶୁକ୍ରାଣୁ ଛାଡ଼ିଥାଏ । ତେବେ ଦୁଇଟି ଶିଶ୍ନ ମଧ୍ୟରୁ ଗୋଟିଏ ଶିଶ୍ନକୁ ସେ ଥରକରେ ମିଳନ ସମୟରେ ବ୍ୟବହାର କରିଥାଏ ।



ସାପର ଅନ୍ତଃଗଠନ

## ୭୫. ଅଣ୍ଡିରା ସାପର ଶିଶ୍ନ କ'ଣ ବାହାରକୁ ଦେଖାଯାଉଥାଏ ?

ସାଧାରଣ ଅବସ୍ଥାରେ ବା ବିଶ୍ରାମ ଅବସ୍ଥାରେ ସାପମାନଙ୍କର ଶିଶ୍ନ ବାହାରକୁ ଦେଖାଯାଏ ନାହିଁ । ଏହା ଶରୀର ମଧ୍ୟରେ ରହିଥାଏ । ଜୀବନ୍ତ ଅବସ୍ଥାରେ ବା ଅଚେତ କରିବା ଅବସ୍ଥାରେ ମୁଣ୍ଡପଟୁ ଲାଞ୍ଜଆଡ଼କୁ ଚିପି ଚିପି ଆଣିଲେ ଶିଶ୍ନ ଦୁଇଟି ବାହାରକୁ ବାହାରିଯାଏ । ତେଣୁ ଏ ଉପାୟରେ ଶିଶ୍ନ ସହଜରେ ଦେଖିହୁଏ । ମଲା ଅବସ୍ଥାରେ ମଧ୍ୟ ଏପରି ଉପାୟରେ ଚିପି ଶିଶ୍ନ ଦେଖିବା ସମ୍ଭବ ହୋଇଥାଏ । ସାପକୁ ହଠାତ୍ ମାରିଦେଲେ ବେଳେବେଳେ

ତାର ଶିଶ୍ନ ଦୁଇଟି ଶରୀର ମଧ୍ୟରୁ ବାହାରକୁ ଆପେ ଆପେ ବାହାରି ଆସିଥାଏ । ତେଣୁ ମଲା ସାପକୁ ଦେଖିବାମାତ୍ରେ ଲୋକ କେତେକ ଭୁଲରେ ଭାବିଥାଆନ୍ତି ଯେ ସାପର ମଧ୍ୟ ପଛଗୋଡ଼ ଥାଏ ବୋଲି । ବାସ୍ତବିକ ପଛଗୋଡ଼ ବା ଗୋଡ଼ ପରିବର୍ତ୍ତେ ଏହା ଦୁଇଟି ଶିଶ୍ନ ମାତ୍ର ।

୭୬. ଗୋଡ଼ ନଥାଇ ସାପ କିପରି ଗତି କରିପାରେ ?

ଅଜଗର ସାପର ପଛଗୋଡ଼ର ଅବଶେଷ (Vestige) ବ୍ୟତୀତ କୌଣସି ସାପ ଦେହରେ ଗୋଡ଼ ନଥାଏ । ତେବେ ଯିବାଆସିବା ଗତିରେ ତାଙ୍କ ଦେହ ଭିତରେ ଥିବା ମେରୁହାଡ଼ କିଛି ମାତ୍ରାର ସହାୟକ ହୋଇଥାଏ । ଏ ମେରୁହାଡ଼ ଅନେକଗୁଡ଼ିଏ ଛୋଟ ଛୋଟ ହାଡ଼କୁ ନେଇ ଗଠିତ । ସେ ଛୋଟ ହାଡ଼ଗୁଡ଼ିକ ମିଶି ଏକ ଲମ୍ବ ଶରୀର ଆକାର ରଖିଥାଏ । ଅଧିକାଂଶ ମେରୁହାଡ଼ (Vertebra) ସହିତ ସରୁ ସରୁ ପଞ୍ଜରା ହାଡ଼ ମଧ୍ୟ ଦୁଇକଡ଼କୁ ଲାଗି ଲାଗି ରହିଥାଏ । ଏ ମେରୁହାଡ଼ର ସଂଖ୍ୟା ପ୍ରାୟ ଦୁଇଶହ (୨୦୦)ରୁ ଚାରିଶହ (୪୦୦) ପର୍ଯ୍ୟନ୍ତ । ତେବେ ସାପମାନେ ଏ ପଞ୍ଜରାହାଡ଼ ସାହାଯ୍ୟରେ ଚାଲିପାରନ୍ତି ବା ଗତିକରିପାରନ୍ତି ନାହିଁ । ଏକଥା ଅନେକ ଭୁଲରେ କହିଥାଆନ୍ତି ।

ସାପଠାରେ ଦୁଇପ୍ରକାର ଗତି ପରିଲକ୍ଷିତ ହୁଏ । ଗୋଟିଏ ପ୍ରକାର ହେଉଛି ଏପାଖ-ସେପାଖ ଅର୍ଥାତ୍ ବାମ-ଡାହାଣ (Horizontal) ଓ ଦ୍ୱିତୀୟ ପ୍ରକାର ହେଉଛି ଉପର-ତଳ (Vertical) । ତେବେ ମୋଟାମୋଟି ବାମ-ଡାହାଣ ଗତି ଅଧିକାଂଶ ସାପମାନଙ୍କଠାରେ ଦେଖାଯାଏ । ଏପରିକି ଏପାଖ-ସେପାଖ ହୋଇ ଅଧିକାଂଶ ବା ପ୍ରାୟ ସବୁ ସାପ ଆଗକୁ ଗତି କରିଥାଆନ୍ତି । ମାତ୍ର ଏକପ୍ରକାର ସାପ (Side winder) ଦେହକୁ ଏପାଖ-ସେପାଖ କରି କେବଳ ଗୋଟିଏ ପାର୍ଶ୍ୱ ବା କଡ଼କୁ ଗତି କରିଥାଏ । ସତରେ ଏ ବଡ଼ ବିଚିତ୍ର କଥା ।

ସାପମାନଙ୍କର ଧୀରଗତି ସମ୍ଭବ ହୋଇଥାଏ ପେଟ ପାଖର କାତି (Ventral Plates) ଦ୍ୱାରା । ଅର୍ଥାତ୍ ପେଟପାଖର ମାଂସପେଶୀର ସଂକୋଚନ ଓ ପ୍ରସାରଣ ଦ୍ୱାରା ପେଟପାଖର କାତି ଭୂଇଁକୁ ଆମୁଡ଼ି ଧରି ଯିବା ଆସିବାରେ ସହାୟକ ହୋଇଥାଏ । ଖୁବ୍ ବେଗରେ ଯିବାଆସିବା ନିର୍ଭର କରିଥାଏ ସାପର ପାର୍ଶ୍ୱବର୍ତ୍ତୀ ମାଂସପେଶୀର ସଂକୋଚନ ଓ ପ୍ରସାରଣ ତଥା ଭୂଇଁର ବନ୍ଧୁରତା ଉପରେ । ମସୃଣ ବା ଚିକ୍କଣ ଭୂଇଁ ଉପରେ ସାପମାନେ ସହଜରେ ଓ ଖୁବ୍ ଜୋର୍‌ରେ ଯାଇଆସି ପାରନ୍ତି ନାହିଁ । ମାତ୍ର ଆବଡ଼ା ଖାବଡ଼ା ଅର୍ଥାତ୍ ମାଟି ଓ ବାଲି ଉପରେ ଅନାୟାସରେ ଜୋର୍‌ରେ ଯାଇପାରନ୍ତି । ଲାଉଡ଼ଙ୍କିଆ ସାପ

ସବୁ ହେତୁ ଭୂଇଁ ଉପରେ ସହଜରେ ଜୋର୍‌ରେ ଆଦୌ ଯାଇପାରେ ନାହିଁ । କିନ୍ତୁ ଗଛମାନଙ୍କରେ ଏ ଡାଳରୁ ସେ ଡାଳ ଖୁବ୍ ଜୋର୍‌ରେ ଯାଇଆସି ପାରେ ।

୭୭. ସାପ ହାରାହାରି କେତେ ବେଗରେ ଯାଇଆସି ପାରନ୍ତି ?

ସାପ ଯିବାଆସିବା କଥା ନେଇ ଅନେକ କଥା ଲୋକମାନଙ୍କ ପାଟିରୁ ଶୁଣାଯାଏ । ଅନେକ କଥା ସେଥିରୁ କପୋଳକଳ୍ପିତ । ତେବେ ପୃଥିବୀରେ ଯେତେଗୁଡ଼ିଏ ସାପ ଖୁବ୍ ଜୋର୍‌ରେ ଯାଇପାରନ୍ତି ସେମାନଙ୍କ ସଂଖ୍ୟା ସୀମିତ । ସେମାନେ ହେଲେ ସୂର୍ଯ୍ୟସାପ (Sun-snakes), ଘାସ ବା ସବୁଜ ସାପ (Grass or Greensnakes), ଗର୍ଜନ ସାପ (Boomslang) ଏବଂ ଆଫ୍ରିକାର ମାମ୍ବା (Mamba) । ଦେଖାଯାଇଛି ଏ ସାପଗୁଡ଼ିକ ସେକେଣ୍ଡରେ ୧୫ଫୁଟ ପର୍ଯ୍ୟନ୍ତ ଗତି କରିପାରନ୍ତି । ଆଉ ସୂର୍ଯ୍ୟସାପର ସର୍ବାଧିକ ଗତି ହେଉଛି ସେକେଣ୍ଡ ପ୍ରତି ୧୧ରୁ ୧୨ଫୁଟ । ସାପମାନଙ୍କ ମଧ୍ୟରେ ଅଜଗର ସାପର ଗତି ଖୁବ୍ ଧୀର ।

୭୮. ସାପ ବିଷର କିଛି ଔଷଧୀୟ ଗୁଣ ରହିଛି କି ?

ସାପ ବିଷର ଔଷଧୀୟ ଗୁଣ ବା ଔଷଧ ଭାବରେ ବ୍ୟବହାର ସଠିକ୍ ଭାବରେ ଜଣାଯାଇ ପାରିନାହିଁ । ତଥାପି ଔଷଧ ଭାବରେ ବ୍ୟବହାର କେତେ ସ୍ଥାନରେ କରାଯାଏ । ତେବେ ତାହା ଖୁବ୍ ସୀମିତ । ଜଣାଯାଇଛି ଯେ, କେତେକ କ୍ଷେତ୍ରରେ ଓ କେତେକ ସ୍ଥାନରେ ଲୋକମାନେ ହିମୋଫିଲିଆ (Haemophilia) ନାମକ ଏକ ପ୍ରକାର ରକ୍ତସ୍ରାବ ରୋଗରେ ରକ୍ତସ୍ରାବ ବନ୍ଦ କରିବାରେ ସାପବିଷ ବ୍ୟବହୃତ ହୁଏ । ଏହାଛଡ଼ା ମୂର୍ଚ୍ଛା (Epilepsy) ରୋଗରେ ଏବଂ ଆଉ କେତେକ ରୋଗ ପାଇଁ ଏହି ବିଷର ପ୍ରୟୋଗ ମଧ୍ୟ ଥିବାର ଜଣାଯାଏ । ସାପ ଶରୀରର ଚର୍ବି ଅନେକ କାର୍ଯ୍ୟରେ ଲାଗିପାରେ ।

୭୯. ଅହିରାଜ ସାପର ବିଶେଷତ୍ୱ କ'ଣ ?

ପୃଥିବୀରେ ସ୍ୱାତନ୍ତ୍ର୍ୟ ଥିବା ସାପମାନଙ୍କ ମଧ୍ୟରେ ଅହିରାଜ (Kingcobra) ଅନ୍ୟତମ । ପୃଥିବୀରେ ଦେଖାଯାଉଥିବା ସମସ୍ତ ନାଗସାପ ମଧ୍ୟରେ ଏ ସାପ ସବୁଠାରୁ ବଡ଼ । ଅନ୍ୟ ପ୍ରାଣୀମାନଙ୍କୁ ଖାଇବା ଛଡ଼ା ଏ ସାପର ବିଶେଷ ଭାବରେ ପ୍ରିୟ ଖାଦ୍ୟ ହେଉଛି ଅନ୍ୟ ସାପ । ତେଣୁ ଏହାର ଅନ୍ୟ ନାମ ସାପଖିଆ ସାପ (Snake-eating Snake) । ବିଜ୍ଞାନ ଭାଷାରେ ଏହାକୁ କୁହାଯାଏ *Ophiophagus hannah* । ବିଷଧର ସର୍ପମାନଙ୍କ ମଧ୍ୟରେ ପୃଥିବୀରେ ଏହା ଏକ ବଡ଼ ବିଷଧର ସର୍ପ । ଏହା ନାଗସାପ ପରିବାରର । ଭାରତ,



ଅହିରାଜ (ନାଗରାଜ, କାଳିନାଗ, ଶେଷନାଗ)

ଭାରତ-ଚୀନ୍ (Indo-China), ମାଳୟ, ମାଲେୟେସିଆ ଓ ଫିଲିପାଇନ୍‌ସରେ ଏମାନେ ବସବାସ କରନ୍ତି । ସାଧାରଣ ଭାବରେ ଏହାର ଲମ୍ବ ପ୍ରାୟ ୧୨ଫୁଟ, କିନ୍ତୁ ୧୮ଫୁଟ ପର୍ଯ୍ୟନ୍ତ ଅହିରାଜ ସାପ ମଧ୍ୟ ଦେଖାଯାଇଛି ବୋଲି ବିବରଣୀରୁ ମିଳେ । ଏହି ବିରାଟ ଆକାର ହିଁ ଯେକୌଣସି ବିଷାକ୍ତ ସାପ ଆକାରଠାରୁ ବଡ଼ । ଏହାର ରୀତି, ନୀତି, ଗତି ଓ ପ୍ରକୃତି ଆଦି ଅତି କର୍କଶ ଓ ଭୟଙ୍କର । ଦଂଶନ ଏହାର ଅତି ଶକ୍ତିଶାଳୀ । ଦଂଶନ ବେଳେ ଏକାଧିକ ଥର ଫଣା ବା ଚୋଟ ମାରିଥାଏ । ଦୁଇତାଲା ବସା ବାନ୍ଧିବା ଏ ସାପର ସାପଜଗତରେ ଆହୁରି ଏକ ବିସ୍ମୟ ।

## ୮୦. ବାମନ ଅଜଗର କ'ଣ ?

ଅଜଗର ସାପ ଅନେକ ପ୍ରକାରର । ଏମାନଙ୍କ ଆକାର ବି ବେଶ୍ ବଡ଼ । ଏମାନଙ୍କର ସବୁଠାରୁ ଅଧିକ ଲମ୍ବ ହେଉଛି ପ୍ରାୟ ୨୫ଫୁଟ ବା ହାରାହାରି ୮ ମିଟର । ଏହା ଅବଶ୍ୟ ଭାରତୀୟ ଅଜଗର । ଭାରତୀୟ ଅଜଗର (*Python molurus*) ଭାରତ, ମାଳୟ ଓ ଜାଭାରେ ଦେଖାଯାଏ । କିନ୍ତୁ ମେକ୍‌ସିକୋରେ ଏକ ସାନ ଅଜଗର ଦେଖାଯାଏ । ଏହା ଖୁବ୍ ସାନ ଏବଂ କ୍ୱଚିତ୍ ମଧ୍ୟ ଦେଖାଯାଏ । ଏହାର ନାମ ବାମନ ଅଜଗର (*Loxocemus bicolor*) । ମୁଣ୍ଡଟି ଏମାନଙ୍କର ମୁନିଆ । ଏହା ମାଟି ଖୋଳିବାରେ ସାହାଯ୍ୟ କରେ । ଏହା ଏକ ଗର୍ତ୍ତନିବାସୀ ସାପ (Burrowing Snake) । ବାମନ ଓ ଭାରତୀୟ ଅଜଗର ବ୍ୟତୀତ ଆଉ

କେତେକ ଅଜଗତ ସାପ ହେଉଛନ୍ତି ପେଣ୍ଡୁ ଅଜଗର (*Python regius*), କାର୍ପେଟ୍ ଅଜଗର *(Python spilotes variegata)* ଓ ଜାଲ ବା ଛନ୍ଦାଛନ୍ଦି ଅଜଗର (Reticulated ବା Regal python ବା Python reticulatus) ଇତ୍ୟାଦି ।

ଇଣ୍ଡୋନେସିଆର ସୁମାତ୍ରା ଜଙ୍ଗଲରୁ ୨୦୦୨ ମସିହାରେ ପୃଥିବୀର ସବୁଠାରୁ ଲମ୍ବା ଅଜଗର (Reticulated Python) ଧରାପଡ଼ିଛି । ଏହାର ଓଜନ ୪୪୭ (ଚାରିଶହ ସତଚାଳିଶି) କିଲୋଗ୍ରାମ୍ ଓ ଲମ୍ବ ୧୪.୮୫ ମିଟର (ପ୍ରାୟ ପନ୍ଦର ମିଟର) । ଏ ପର୍ଯ୍ୟନ୍ତ ସୁଦ୍ଧା ଧରାଯାଇଥିବା ସବୁଠାରୁ ଲମ୍ବ ସାପର ଲମ୍ବା ଥିଲା ୯.୭୫ ମିଟର ବୋଲି ଗିନିଜ୍ ପୁସ୍ତକ (Guiness Book of World Records)ରୁ ଜଣାଯାଏ । ଏବେ ଧରାଯାଇଥିବା ଏ ଲମ୍ବ ଅଜଗରଟିକୁ ଲୋକମାନେ ଦେଖିବା ପାଇଁ ଜାଭାର କୁରୁଗେସୁ ନାମକ ଏକ ପୁରୁଣା ଚିଡ଼ିଆଖାନା (Curugsewu Zoo)ରେ ରଖାଯାଇଛି । ମୋଟାମୋଟି ଜାଲ ବା ଛନ୍ଦାଛନ୍ଦି ଅଜଗର (Reticulated Python) ହିଁ ବିଶ୍ୱର ସବୁଠାରୁ ଲମ୍ବା ସାପ । ଏମାନଙ୍କର ବାସସ୍ଥଳୀ ହେଉଛି ଦକ୍ଷିଣପୂର୍ବ ଏସିଆର ସନ୍ତସନ୍ତିଆ ଜଙ୍ଗଲ ।



ସୁମାତ୍ରା ଜଙ୍ଗଲରୁ ଧରାପଡ଼ିଥିବା ପୃଥିବୀର ସବୁଠାରୁ ଲମ୍ବ ଅଜଗର ଜାଭାର କୁରୁଗେସୁ ଚିଡ଼ିଆଖାନାରେ ।

## ୮୧. ରାଜସାପ କ'ଣ ?

ରାଜସାପ (King Snake) ଏକପ୍ରକାର ସାପ । ଏହାର ବିଜ୍ଞାନ ଭାଷାରେ ନାଁ ହେଉଛି *Lampropeltis getulus* । ଉତ୍ତର ଆମେରିକା,

ମେକ୍ସିକୋ ଓ କେନ୍ଦ୍ର ଆମେରିକାର ଏହାର ଚରାଭୂଇଁ । ଏମାନେ ଅନ୍ୟ ସାପମାନଙ୍କୁ ଆକ୍ରମଣ କରି ଖାଦ୍ୟ ଭାବରେ ଗ୍ରହଣ କରନ୍ତି । ଏମାନଙ୍କ ମଧ୍ୟରୁ ବଡ଼ ବଡ଼ ରାଜସାପଗୁଡ଼ିକୁ ଗର୍ତ୍ତମସ୍ତକୀ ବୋଡ଼ାସାପର ବିଷ କାବୁ କରେନାହିଁ । ଅର୍ଥାତ୍, ବୋଡ଼ାସାପ କାମୁଡ଼ିଲେ ବଡ଼ ରାଜସାପଗୁଡ଼ିକର କିଛି ହୁଏନାହିଁ । ଏପରିକି ବୋଡ଼ା ସାପମାନଙ୍କୁ ବେଳେବେଳେ ଆକ୍ରମଣ କରି ଓ କାବୁ କରି ଗିଳି ପକାଇଥାଆନ୍ତି ଏମାନେ । ସେଥିପାଇଁ ଏମାନଙ୍କର ନାମକରଣ ଏପରି କରାଯାଇଛି । କ୍ରାନ୍ତିମଣ୍ଡଳୀୟ ରାଜସାପ (Tropical King Snake ବା *Lampropeltis polyzonus*) ଦେଖାଯାଆନ୍ତି ମେକ୍ସିକୋ ଓ କେନ୍ଦ୍ର ଆମେରିକାରେ । ରାଜସାପଗୁଡ଼ିକ ମଧ୍ୟ ପରସ୍ପରକୁ ବେଳେବେଳେ ଖାଇବାର (Cannibalistic) ଦେଖାଯାଏ । ତେବେ ଏମାନେ ସମସ୍ତେ ମୂଷାମାନଙ୍କୁ ଖାଇ କୃଷକକୁ ବହୁତ ସାହାଯ୍ୟ କରନ୍ତି ଶସ୍ୟ ବଞ୍ଚାଇବାରେ ।

ଫ୍ଲୋରିଡ଼ାରେ ଏକପ୍ରକାର ରାଜସାପ ଦେଖାଯାଆନ୍ତି । ଏମାନଙ୍କ ନାମ ଫ୍ଲୋରିଡ଼ା ରାଜସାପ (Florida King Snake ବା *Lampropeltis getulus floridana*) । ଏମାନେ ତାଙ୍କ ଲମ୍ବଠାରୁ ଅଧିକ ଲମ୍ବର ସାପମାନଙ୍କୁ ବି ଗିଳିପକାନ୍ତି ।

୮୨. ଲାଉଡ଼ଙ୍କିଆ ସାପ କ'ଣ ଆଖିକୁ ତାଡ଼ି ପକାଏ ?

ଲାଉଡ଼ଙ୍କିଆ ଗୋଟିଏ ବିଷହୀନ ଲମ୍ବା ସରୁ ସାପ । ଦେହଟି ସବୁଜ ବର୍ଣ୍ଣର । ମୁଣ୍ଡଟି ତିନିକୋଣିଆ ବା ମୁନିଆ । ମୁଣ୍ଡର ଆକାର ଆଗକୁ ଛୁଞ୍ଚି ପରି ବା ବର୍ଚ୍ଛାପରି ରହିଥିବାରୁ ଲୋକମାନେ ଭୟରେ କହିଥାଆନ୍ତି ଯେ ସେ



ତିନିକୋଣିଆ ମୁଣ୍ଡଥାଇ ସବୁଜ ବୃକ୍ଷ ସାପ

ଆଖିକୁ ଡାଡ଼ି ନେଇଯିବ ବୋଲି । ମାତ୍ର ଏହା ସମ୍ପୂର୍ଣ୍ଣ ଅନ୍ଧବିଶ୍ୱାସ ବା କପୋଳକଳ୍ପିତ କଥା ।

୮୩. ବୋଡ଼ାସାପ ଚାଟିଦେଲେ କୁଷ୍ଠରୋଗ ହୁଏ କି ?

ବୋଡ଼ାସାପ ଏକ ବିଷହୀନ ସାପ । ଏ ସାପର ଦେହ ଠିକ୍ କୁଷ୍ଠରୋଗୀ ଦେହପରି ବିକୃତ ହୋଇଥିବାରୁ ଲୋକମାନଙ୍କର ଧାରଣା ଯେ ଏହା ଚାଟିଦେଲେ ବା ଛୁଇଁଦେଲେ କୁଷ୍ଠରୋଗ ହୋଇଯିବ ବୋଲି । ଏହା ଏକ ଭ୍ରମାତ୍ମକ ବିଶ୍ୱାସ । ସାପମାନେ ସାଧାରଣତଃ ପରିଷ୍କାର, ଦେହଟି ଚିକ୍କଣ ଓ ମସୃଣ । ଏମାନଙ୍କୁ ଛୁଇଁଲେ କିଛି ରୋଗ ହୁଏନାହିଁ କି ଏମାନଙ୍କ ଲାଞ୍ଜ ଆଦି ଅଙ୍ଗ କାନରେ ପୁରାଇଲେ କାନରୋଗ ଭଲ ହୁଏନାହିଁ । ମାତ୍ର କେଳାମାନେ ଏପରି ଭୁଲରେ କହି ପଇସା ରୋଜଗାର କରିଥାଆନ୍ତି ।

୮୪. ଅଜଗର ସାପ କ'ଣ ବେଶ୍ ବଡ଼ ବଡ଼ ପ୍ରାଣୀଙ୍କୁ ଗିଳିପାରେ ?

ଅଜଗର ଗୋଟିଏ ବିଷହୀନ ସାପ । ଏ ସାପର ପାଟି ବେଶ୍ ଭଲଭାବରେ ମେଲା ହୋଇପାରେ । ଅବଶ୍ୟ ଅନ୍ୟ ସାପମାନଙ୍କର ପାଟି ଅବସ୍ଥା ପ୍ରାୟ ସେମିତି । ତେବେ ଏହା ଅଧିକ ଭଲଭାବରେ ଉପରପାଟି ଓ ତଳପାଟି ମେଲାଇପାରେ । ତେଣୁ ଶିକାର ହାବୁଡ଼ରେ ପଡ଼ିଲେ ଅର୍ଥାତ୍ ଛେଳି, ମେଣ୍ଢା, କୁକୁର, ବିଲେଇ ବା ବିଲୁଆ ଆଦି ବଡ଼ ବଡ଼ ପ୍ରାଣୀମାନଙ୍କୁ ଏ ଅଜଗର ସହଜରେ ଗିଳିବାର ଦେଖାଯାଏ ।



ଭାରତରେ ଦେଖାଯାଉଥିବା ଅଜଗର ସାପ ।

୮୫. ଦୋମୁଣ୍ଡିଆ ସାପର କ'ଣ ସତରେ ଦୁଇଟି ମୁଣ୍ଡ ଥାଏ ?

ଅନ୍ୟ ପ୍ରାଣୀମାନଙ୍କ ପରି ସାପମାନଙ୍କର ଗୋଟିଏ ମୁଣ୍ଡ ଥାଏ । ସେହିପରି ଦୋମୁଣ୍ଡିଆ ସାପର ମଧ୍ୟ ଗୋଟିଏ ମୁଣ୍ଡ ରହିଥାଏ । ତେବେ ଏ ସାପର ମୁଣ୍ଡ ଦେଖିବାକୁ ଯେମିତି ଲାଞ୍ଜ ମଧ ଦେଖିବାକୁ ସେମିତି ବା ମୁଣ୍ଡପରି । ଅବଶ୍ୟ ଅନ୍ୟ ସାପମାନଙ୍କର ଲାଞ୍ଜ ସରୁ । ଏହାର ଲାଞ୍ଜ ସରୁ ନହୋଇ ମୁଣ୍ଡପରି ଚଉଡ଼ା ହୋଇଥିବାରୁ ଲାଞ୍ଜଟି ମଧ ଭୁଲରେ ମୁଣ୍ଡ ବୋଲି ଧାରଣା ହୋଇଥାଏ । ସେଥିପାଇଁ ଭୁଲରେ ଦୋମୁଣ୍ଡିଆ ସାପ ବୋଲି ନାମକରଣ ହୋଇଛି । ତେବେ କ୍ୱଚିତ୍ ସାପର ଦୁଇଟି ମୁଣ୍ଡ ଗୋଟିଏ ପାର୍ଶ୍ୱରେ ଥିବାର ଜଣାଯାଇଛି ।

୮୬. କଳାନାଗ କ'ଣ ? ଏ କ'ଣ ବଡ଼ ବିଷାକ୍ତ ସାପ ?

ଅହିରାଜ ସାପକୁ କଳାନାଗ ବୋଲି କୁହନ୍ତି । କେତେକ ସ୍ଥାନର ଲୋକମାନେ ନାଗରାଜ ଓ ଆଉ କେତେକ ଅଧିବାସୀମାନେ ଶେଷନାଗ ବୋଲି ଡାକନ୍ତି । ପୃଥିବୀର କେତେକ ବିଷାକ୍ତ ସାପ ମଧ୍ୟରେ ଏ ଏକ ବଡ଼ ବିଷାକ୍ତ ଓ ମାରାତ୍ମକ ସାପ । ଏହାର ସାଧାରଣ ବର୍ଣ୍ଣ ଗାଢ଼ କଳା । ଅବଶ୍ୟ ଛୋଟ ଅବସ୍ଥାରେ ଏପରି ଗାଢ଼କଳା ଦେଖାଯାଆନ୍ତି । ମାତ୍ର ବଡ଼ ହୋଇଗଲେ ବର୍ଣ୍ଣରେ ପରିବର୍ତ୍ତନ ଆସେ । ବଡ଼ ଅବସ୍ଥାରେ ହଳଦିଆ ବର୍ଣ୍ଣ ଶରୀରରେ ଛକ ଛକ ଚିହ୍ନ ଦେଖାଯାଏ । ଏ ସାପର ବିଶେଷତ୍ୱ ହେଉଛି ବହୁତ ଉଚ୍ଚ ପର୍ଯ୍ୟନ୍ତ ଫଣାଟେକି ଅନେକ ସମୟ ସ୍ଥିର ଭାବରେ ରହିପାରେ । ଅନ୍ୟ ସାପ ହିଁ ଅହିରାଜର ମୁଖ୍ୟ ଓ ପ୍ରିୟ ଖାଦ୍ୟ । ସେଥିପାଇଁ ଏହାକୁ ସାପଖିଆ ସାପ ବୋଲି ମଧ କୁହାଯାଏ । ଏହା ଘଞ୍ଚ ଜଙ୍ଗଲରେ ରହିବାକୁ ଭଲପାଏ ।

୮୭. ପ୍ରବାଳ ସର୍ପର ଏପରି ନାମକରଣ କାହିଁକି ହୋଇଛି ?

ପ୍ରବାଳକୁ ଇଂରାଜୀରେ କୋରାଲ୍ (Coral) ବୋଲି କୁହାଯାଏ । ସେଥିପାଇଁ ଇଂରାଜୀ ଭାଷାରେ ଏହାର ନାମ କୋରାଲ ସାପ । ପ୍ରବାଳ ହେଉଛି ଏକପ୍ରକାର ସାମୁଦ୍ରିକ ପ୍ରାଣୀ । ଧୀର ପାଣିରେ ସମୁଦ୍ର ଗର୍ଭରେ ଏମାନେ ଦେଖାଯାଆନ୍ତି । ପ୍ରବାଳମାନଙ୍କୁ ଅନେକ ସଂଖ୍ୟାରେ ଦ୍ୱୀପପୁଞ୍ଜ ଅଞ୍ଚଳରେ ଦେଖିବାକୁ ମିଳେ । ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜ, ଅଷ୍ଟ୍ରେଲିଆର ବୃହତ୍ ପ୍ରବାଳ ପ୍ରାଚୀର, ଲାକ୍ଷାଦ୍ୱୀପ ଆଦି ସ୍ଥାନରେ ଏମାନେ ଦେଖାଯାଆନ୍ତି । ପ୍ରବାଳମାନଙ୍କର ବିଶେଷତ୍ୱ ହେଉଛି ଏମାନେ ବିଭିନ୍ନ ଆକାରର ଓ ବିଭିନ୍ନ ବର୍ଣ୍ଣର

ପ୍ରାଣୀ । ଠିକ୍ ସେହିପରି ପ୍ରବାଳ ସାପଗୁଡ଼ିକ ବିଭିନ୍ନ ରଙ୍ଗର । ବାହାରୁ ଦେଖିଲେ ନାଗ ସାପପରି; କିନ୍ତୁ ମୁଣ୍ଡରେ ଫଣା ନଥାଏ କି ମୁଣ୍ଡ ଉପରେ କଠଉ ଚିହ୍ନ ନଥାଏ । ଏମାନେ ବେଶୀ ଭାରତରେ ଦେଖାଯାଆନ୍ତି । ଏମାନେ ବିଷାକ୍ତ ସାପ ଶ୍ରେଣୀରେ ଅନ୍ତର୍ଭୁକ୍ତ ।



ପ୍ରବାଳ ସାପ (କୋରାଲ ସାପ)

୮୮. ସମୁଦ୍ର ସାପର ବିଶେଷତ୍ୱ କ'ଣ ?

ସାପମାନେ ହେଉଛନ୍ତି ସରୀସୃପ । ସରୀସୃପମାନଙ୍କର ବିଶେଷ ଗୁଣ ହେଉଛି ଯେ ସେମାନେ ସ୍ଥଳଭାଗରେ ଦେଖାଯାଆନ୍ତି । କିନ୍ତୁ ବ୍ୟତିକ୍ରମ ରହିଛି ଧଣ୍ଡସାପ ଓ ସମୁଦ୍ର ସାପମାନଙ୍କଠାରେ । ଏମାନେ ଜଳଭାଗରେ ଦେଖାଯାଆନ୍ତି । ଧଣ୍ଡସାପ ସ୍ଥଳଭାଗ ଓ ଜଳଭାଗ ଉଭୟ ସ୍ଥାନରେ ରହିଥାଆନ୍ତି । ଅବଶ୍ୟ ଧଣ୍ଡସାପଗୁଡ଼ିକ ନଈ, ପୋଖରୀ ଓ ଗଡ଼ିଆ ଆଦି ମଧୁର ଜଳରେ ରହିଥାଆନ୍ତି । କିନ୍ତୁ ସମୁଦ୍ର ସାପମାନଙ୍କର ଘର ହେଉଛି ସମୁଦ୍ରର ଲୁଣିପାଣି । ସାମୁଦ୍ରିକ ସର୍ପମାନଙ୍କର ସଂଖ୍ୟା ପୃଥିବୀରେ ବସବାସ କରୁଥିବା ସର୍ପମାନଙ୍କ ସଂଖ୍ୟାଠାରୁ ଅଧିକ । ପ୍ରାୟ ୫୫ ପ୍ରକାରର ସାପ ଅଷ୍ଟ୍ରେଲିଆ ଓ ଦକ୍ଷିଣ ଏସିଆରେ ଦେଖାଯିବା ସ୍ଥଳେ ଲୋହିତସାଗର ଓ ଆଟଲାଣ୍ଟିକ ମହାସାଗରରେ ଆଦୌ ସାମୁଦ୍ରିକ ସାପ ଦେଖାଯାଆନ୍ତି ନାହିଁ । କେବଳ ଗୋଟିଏ ପ୍ରକାର ସାପ (*Laticauda*) ଲେକେଟାଲ୍ ଓ ଫିଲିପାଇନ୍ସରେ ଦେଖାଯାଆନ୍ତି । ସମୁଦ୍ର ଉପକୂଳର ପଥର ଫାଙ୍କରେ, ସାମୁଦ୍ରିକ ଗଛ ମୂଳରେ ଓ ବର୍ଷାଦିନେ ହେନ୍ତାଳ (Mangrove) ଗଛ ମୂଳରେ ବହୁ ପରିମାଣରେ ଦେଖାଯାଆନ୍ତି । ପେଲାମିସ୍ *(Pelamis)* ନାମକ ସାପ ଅତି ଚତୁରତାର ସହ କୌଶଳ କରି ଅନ୍ୟମାନଙ୍କୁ ଖାଆନ୍ତି । ଅଷ୍ଟ୍ରେଲିଆ ଓ ଫର୍ମୋଜାର ଏକପ୍ରକାର

ସାମୁଦ୍ରିକ ସାପ *(Emydocephalus)* ମାଛମାନଙ୍କର ଅଣ୍ଡା ଖାଇ ବଞ୍ଚନ୍ତି । ଲାଟିକଡ଼ା ସାପମାନଙ୍କୁ ଫିଜି ଦ୍ୱୀପପୁଞ୍ଜରେ ପିଲାମାନେ ହାତରେ ଧରି ଖେଳନ୍ତି । ଏମାନେ ଖୁବ୍ ଆୟତ୍ତାଧୀନ । ଏ ଲାଟିକଡ଼ା ଜାତୀୟ ସାପମାନଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତ ସାପ ପାଣି ଭିତରେ ଜୀବନ୍ତ ଭାବରେ ଜନ୍ମ ନିଅନ୍ତି । ଭାରତର ବଙ୍ଗୋପସାଗରରେ ପ୍ରାୟ ୨୦ ପ୍ରକାରର ସାପ ଦେଖାଯାଆନ୍ତି । ସାମୁଦ୍ରିକ ସର୍ପର ମାଂସକୁ ଜାପାନୀମାନେ ଖାଇବାକୁ ଭଲପାଆନ୍ତି । ଏସବୁ ଛଡ଼ା ସମୁଦ୍ର ସାପମାନଙ୍କଠାରେ ଆଉ କେତେକ ବିଶେଷ ଗୁଣ ଦେଖାଯାଏ ।

(୧) ଏମାନେ ଆକାରରେ ବେଶୀ ବଡ଼ ନ ହୋଇ ଏକ ମିଟର ଭିତରେ ଲମ୍ବ ହୋଇଥାଏ । ମୁଣ୍ଡଟି ଛୋଟ ଓ ଆଖିଗୁଡ଼ିକ ମଧ ଖୁବ୍ ଛୋଟ ।

(୨) ବିଷାକ୍ତ ହେଲେ ବି ବିଷଦାନ୍ତ ଆକାରରେ ଛୋଟ ।

(୩) ଲାଞ୍ଜ ଚଟକା । ଦେଖିବାକୁ ଠିକ୍ ନାଉରୀର ଆହୁଲା ପରି ।

(୪) ପିଠିପାଖ ଗାଢ଼ ସବୁଜ ବା ପାଣିଚିଆ ନୀଳବର୍ଣ୍ଣ ।

(୫) ଏମାନଙ୍କର ପ୍ରିୟ ଖାଦ୍ୟ ହେଉଛି ସାମୁଦ୍ରିକ ମାଛ ଓ ଚିଙ୍ଗୁଡ଼ି ।

(୬) ଏମାନେ ଛୁଆ ଦିଅନ୍ତି । ଅନ୍ୟ ସାପମାନଙ୍କ ପରି ଅଣ୍ଡା ଦିଅନ୍ତି ନାହିଁ । ଛୁଆମାନଙ୍କୁ ମାଆ ମୁଖ୍ୟତଃ ସ୍ଥଳଭାଗରେ ଜନ୍ମ ଦିଅନ୍ତି । ଏ ସ୍ଥଳଭାଗ ହିଁ ସମୁଦ୍ର ମଧ୍ୟସ୍ଥ ଅଞ୍ଚଳ ହୋଇଥାଏ ।

(୭) ଛୁଆ ଜନ୍ମହେବା ପରେ ମାଆ ଛୁଆମାନଙ୍କୁ ଜଗି ରହିଥାଏ ।

(୮) ଏମାନଙ୍କ ବିଷର ପ୍ରକୃତି ହେଉଛି ସ୍ନାୟବିକ (Neurotoxic) ।

୮୯. କଟକଟିଆ ବୋଡ଼ା ବା ରାଟଲ୍‌ସାପର ନାମ ଏମିତି ହୋଇଛି କାହିଁକି ?

ରାଟଲସାପର ଲାଞ୍ଜପଟେ ୧୦ରୁ ୧୨ଟି ମୁଦିପରି ଫମ୍ପା ଓ ଟାଣ ଆକାର ପରସ୍ପରକୁ ଲାଗି ରହିଥାଏ ବୋଲି ତାର ଏପରି ନାମକରଣ ହୋଇଛି । ଏ ରାଟଲସାପ ଅନେକ ପ୍ରକାରର । ଏମାନେ ମୁଖ୍ୟତଃ ଆମେରିକାରେ ଦେଖାଯାଆନ୍ତି । ଏମାନଙ୍କ ମଧ୍ୟରୁ କେଉଁମାନେ ମରୁଭୂମିରେ ତ କେଉଁମାନେ ସମତଳ ଅଞ୍ଚଳରେ ଅଥବା ଆଉ କେତେକ ଘଞ୍ଚ ଜଙ୍ଗଲରେ ଥାଆନ୍ତି । ଏ ପୃଥିବୀରେ ଥିବା କେତେକ ବିଷାକ୍ତ ସାପ ମଧ୍ୟରେ ଏକ ଅତି ମାରାତ୍ମକ ବିଷାକ୍ତ ସାପ । ସାପ ଚମଡ଼ା ଛାଡ଼ିବାବେଳେ ଏ ରାଟଲ ତିଆରି ହୋଇଥାଏ । ତେବେ

ମଝିରେ ମଝିରେ ସମୁଦାୟ ରାଟଲ ସାପର ଶରୀରରୁ ବାହାରି ଖସି ଆସିଥାଏ । ପୁଣି ତିଆରି ମଧ୍ୟ ହୋଇଥାଏ । ସାପ ଗତି କଲାବେଳେ ଭୂଇଁରେ ଏ ରାଟଲଗୁଡ଼ିକ ବାଡ଼େଇ ହୋଇ ରାଟଲ ଶବ୍ଦ ସୃଷ୍ଟି ହୋଇଥାଏ । କିନ୍ତୁ ଭୂଇଁରେ ଆଘାତ ପୂର୍ବରୁ ରାଟଲ୍‌କୁ ଦୋହଲାଇ ଗୁଞ୍ଜରଣ ଶବ୍ଦ ସୃଷ୍ଟି କରି ଶତ୍ରୁକୁ ସତର୍କ ସୂଚନା ଦେଇଥାଏ ।



ଲାଞ୍ଜରେ ମୁଦି ପରି ରାଟଲ୍ ଥିବା ଏକ ରାଟଲ୍ ସାପ ।

ସବୁଠାରୁ ବଡ଼ ରାଟଲ ସାପ ଲମ୍ବରେ ପ୍ରାୟ ୮ ଫୁଟ ଏବଂ ସବୁଠାରୁ ସାନ ରାଟଲ ସାପର ଆକାର ମାତ୍ର ପନ୍ଦର ଇଞ୍ଚ । ସାନ ରାଟଲ ସାପର ନାମ ହେଉଛି ୱିଲାର୍ଡ୍ ରାଟଲ ସାପ (Willard's Rattlesnake) । ବୈଜ୍ଞାନିକ ଭାଷାରେ ତାର ନାମ *Crotalus willardi* । ଏ ସାନ ସାପଟି ଖୁବ୍ କ୍ୱଚିତ୍ ଦେଖାଯାଏ । ରାଟଲ ସାପମାନଙ୍କ ମଧ୍ୟରେ ସବୁଠାରୁ ବିଷାକ୍ତ ଓ ସବୁଠାରୁ ସାହସୀ ରାଟଲ ହେଉଛି କ୍ରାନ୍ତିମଣ୍ଡଳୀୟ ରାଟଲସାପ (Tropical Rattlesnake) । ଏ ସାପ ଅତି ବିଷାକ୍ତ ହୋଇଥିବାରୁ ତାର ବୈଜ୍ଞାନିକ ନାମ *Crotalus terrificus* । ସବୁ ରାଟଲସାପର ବେକ ଅପେକ୍ଷାକୃତ ସରୁ । ବେକର ଆକାର ବା ଗଠନରୁ ରାଟଲସାପଗୁଡ଼ିକ ବୋଡ଼ା ସାପମାନଙ୍କଠାରୁ ଅଲଗା ଜଣାପଡ଼ିଯାଏ । କାରଣ ବୋଡ଼ାସାପଗୁଡ଼ିକ (Viperine Snakes)ର ବେକ ବେଶ୍ ମୋଟା ।

୯୦. ଗର୍ତ୍ତବିହୀନ ବୋଡ଼ାସାପର ପ୍ରକାର, ଆକାର ଓ ବ୍ୟବହାର କ'ଣ ?

ଗର୍ତ୍ତବିହୀନ ବୋଡ଼ାସାପମାନଙ୍କର ମୁଣ୍ଡର ଆଖି ଓ ନାକ ମଝିରେ ଗାତ ନଥାଏ । ଏମାନେ ପ୍ରକୃତ ବୋଡ଼ା (True Viper) ସାପ ଭାବରେ ଜଣାଶୁଣା । ଏମାନଙ୍କ ଆକାର ଠିକ୍ ଗର୍ତ୍ତମସ୍ତକୀ ବୋଡ଼ା ପରି । ଭାରତରେ ମୁଖ୍ୟତଃ ଦୁଇପ୍ରକାର ଗର୍ତ୍ତବିହୀନ ବୋଡା ବେଶ୍ ସାଧାରଣ ।

(୧) ରସେଲ୍ ବୋଡ଼ା (Russel's Viper ବା *Vipera russelli*)

(୨) କରତକାତିଆ ବୋଡ଼ା (Saw Scaled Viper ବା *Echis carinata*)

ରସେଲ ବୋଡ଼ା ମୁମ୍ବାଇ, ଚେନାଇ ଓ ପଞ୍ଜାବ ଅଞ୍ଚଳରେ ବେଶ୍ ଦେଖାଯାଆନ୍ତି । ଅବଶ୍ୟ କମ୍ ଦେଖାଯାଆନ୍ତି ପାହାଡ଼ିଆ ସ୍ଥାନରେ । ମୁଣ୍ଡଉପରେ ଇଂରାଜୀ ଭି (V) ଆକାରର ଚିହ୍ନ ଏମାନଙ୍କଠାରେ ଥାଏ । ଶତ୍ରୁର ସନ୍ଧାନ ପାଇଲେ ଏ ସାପମାନେ ଖୁବ୍ ଜୋର୍‌ରେ ଓ ଲଗାତର ଭାବରେ ଫୁସ୍‌ଫୁସ୍ ଶବ୍ଦ କରିଥାଆନ୍ତି । ଶୁଣିଲେ ଏ ଶବ୍ଦ ବଡ଼ ଭୟଙ୍କର ଲାଗେ । ଏମାନେ ଛୁଆ ଦିଅନ୍ତି । ଥରକରେ ଛୁଆ ସଂଖ୍ୟା ୩୦ରୁ ୪୦ ।



ରସେଲ ବୋଡ଼ା

କରତକାତିଆ ବୋଡ଼ା ସାପଗୁଡ଼ିକ ମୁଖ୍ୟତଃ ଦେଖାଯାଆନ୍ତି ଦକ୍ଷିଣଭାରତ ଅଞ୍ଚଳରେ । ଏମାନଙ୍କ ପ୍ରିୟ ଚରାଭୂଇଁ ହେଉଛି ଅଳ୍ପ ଅଳ୍ପ ବୁଦାଥିବା ବାଲିଆ ସ୍ଥାନ । ସବୁଜ ବା ଧୂସର ବର୍ଣ୍ଣ ଦେହସାରା ଗୋଲ ଗୋଲ କଳା ଓ ଧୂସରିଆ ଦାଗରେ ପୂର୍ଣ୍ଣ । ପେଟ ପାଖ ଧଳା । ପିଠି ପାଖର କାତି କରତଦାନ୍ତ ପରି ହୋଇଥିବାରୁ ଏମାନଙ୍କୁ କରତକାତିଆ ବୋଡ଼ା ବୋଲି କୁହାଯାଏ । ଏହାର କାମୁଡ଼ା ମଣିଷ ପାଇଁ ଏତେ ସାଂଘାତିକ ନୁହେଁ । ଏମାନେ ଶତ୍ରୁର ଆଭାସ ବାରିଲେ ଇଂରାଜୀ ଆଠ (8) ପରି ଶରୀରକୁ କରି ଦେହକୁ ଘଷି ଜୋର୍‌ରେ

ଶବ୍ଦ କରନ୍ତି । ଏ ଶବ୍ଦ ଅବଶ୍ୟ କରତ ପରି ଦନ୍ତୁରିତ କାତି ଦେହ ଉପରେ ଘଷି ହେବା ଯୋଗୁ ସୃଷ୍ଟି ହୋଇଥାଏ । ଏପରି ଶବ୍ଦ ବାହାର କରି ଶତ୍ରୁକୁ ଏମାନେ ଡରାଇଥାଆନ୍ତି ଓ ଶତ୍ରୁମୁଖରୁ ନିଜକୁ ବଞ୍ଚାଇଥାଆନ୍ତି ।

୯୧. "ଆରେ ରଣା , ବୁଲି ବୁଲି ତୁ ଏଇ ଅଗଣା"–ଏପରି ଲୋକକଥାର ତାତ୍ପର୍ଯ୍ୟ କ'ଣ ?

ରଣା ଗୋଟିଏ ବିଷାକ୍ତ ସାପ । ଏହାକୁ ଇଂରାଜୀରେ କ୍ରେଟ୍ (Krait) ବୋଲି କୁହାଯାଏ । ଆକାରରେ ଛୋଟ । ପ୍ରାୟ ଦୁଇ ମିଟର ଭିତରେ ଏମାନଙ୍କର ଲମ୍ବ । ପିଠି ପାଖ କଳା ବା ପାଉଁଶିଆ ଓ ପେଟ ସମ୍ପୂର୍ଣ୍ଣ ଧଳା । ଏମାନେ ମୁଖ୍ୟତଃ ଖୁବ୍ ଚଞ୍ଚଳ । ସବୁବେଳେ ସକ୍ରିୟ ଥିବାର ଦେଖାଯାଏ । ବିଭିନ୍ନ ପ୍ରକାର ବେଙ୍ଗ (କାଠବେଙ୍ଗ, ଲୁଣିବେଙ୍ଗ), ମୂଷା ଓ ଛୋଟ ଛୋଟ ସାପ ଆଦି ଏମାନଙ୍କର ଖାଦ୍ୟ । ଯେଉଁ ପ୍ରାଣୀ ହାବୁଡ଼ରେ ପଡ଼େ ତାକୁ ଗିଳିଯିବା ଏମାନଙ୍କର ଅଭ୍ୟାସ । ତେଣୁ ଯେଉଁ ସ୍ଥାନରେ ଏମାନେ ସାପ ବା ବେଙ୍ଗ ଅଥବା ମୂଷାର ସନ୍ଧାନ ପାଆନ୍ତି, ସେ ସ୍ଥାନରେ ଖାଲି ଏମାନେ ଏପାଖ ସେପାଖ ହେବାର ନଜରକୁ ଆସେ । ମଜା କଥା ହେଉଛି ଗାଁଗହଳିରେ ଥିବା ଘରପାଖର ଖଳାଗଦା, ଘର, ବିଲ ଓ ପଡ଼ିଆ ଆଦି ସ୍ଥାନରେ ଯେଉଁଠି ଶସ୍ୟ ଥାଏ ବା ଧାନ, ମୁଗ ଆଦି ଗଦା ହୋଇଥାଏ, ସେଠାରେ ମୂଷା ଓ ବେଙ୍ଗ ବି ଦେଖାଯାଆନ୍ତି । ସାପମାନେ ଏମାନଙ୍କୁ ଖାଇବାକୁ ସେ ସ୍ଥାନକୁ ଆସନ୍ତି । ସେଥିପାଇଁ ଗାଁଗହଳି ଲୋକମାନେ ରଣାସାପ ନାଆଁରେ ଏମିତି କହିଥାଆନ୍ତି । ବିଶେଷ କରି ପିଲାମାନେ ଘରେ ଥୟ ନହୋଇ ବାହାରେ ବୁଲାବୁଲି କଲେ ବାପାମାଆମାନେ ପିଲାଙ୍କ ଉପରେ ବିରକ୍ତ ହୋଇ ରଣାସାପ ପରି ହେଉଛୁ ବୋଲି ପିଲାମାନଙ୍କୁ କହିଥାଆନ୍ତି ।

୯୨. ରଣାସାପ କେତେ ପ୍ରକାର ? ଏମାନେ କ'ଣ ଅଣ୍ଡା ଦିଅନ୍ତି ?

ଭାରତରେ ପ୍ରାୟ ୧୦ପ୍ରକାର ରଣାସାପ ଦେଖାଯାଆନ୍ତି । ତେବେ ଏମାନଙ୍କ ଭିତରେ ସବୁଠାରୁ ସାଧାରଣ ରଣାସାପଗୁଡ଼ିକ ହେଉଛନ୍ତି–

(୧) ସାଧାରଣ ରଣା *(Bungarus caeruleus)*

(୨) ପଟ୍ଟୀ ରଣା *(Bungarus fasciatus)*

(୩) କଳା ରଣା *(Bungarus niger)*



ରଣା ସାପ

ଏମାନେ ସମସ୍ତେ ଅଣ୍ଡାପ୍ରସବୀ । ଅଣ୍ଡାଗୁଡ଼ିକୁ ୪୫ଦିନରୁ ୬୦ଦିନ ମଧ୍ୟରେ ଫୁଟି ଛୁଆମାନେ ବାହାରିଥାଆନ୍ତି ।

୯୩. ଆନାକୋଣ୍ଡାଟି କ'ଣ ?

କିଛିବର୍ଷ ତଳେ ଆନାକୋଣ୍ଡା ନାଆଁରେ ଚଳଚ୍ଚିତ୍ର ଆସିଥିଲା । ଆନାକୋଣ୍ଡା ଏକ ବିଷହୀନ ସାପ । ଭାରତରେ ଏହା ଦେଖାଯାଏ ନାହିଁ । ଦେଖାଯାଏ ଦକ୍ଷିଣ ଆମେରିକାର ଆମାଜନ୍‌ରେ । ଏହା ପୃଥିବୀର ସବୁଠାରୁ ବଡ଼ ଓ ସବୁଠାରୁ ଓଜନ ସାପ । ପାଣି ପାଖରେ ଥିବା ଗଛମାନଙ୍କରେ ଓ ପାଣି ମଧ୍ୟରେ ଏ ବିଷହୀନ ସାପ ଦେଖାଯାଏ । ଏମାନେ ଅଜଗର ସାପ ପରି ଅନ୍ୟ ଜୀବମାନଙ୍କୁ ଗିଳି ପକାଇବାର ଦେଖାଯାଏ । ଆନାକୋଣ୍ଡାର ଆକାର ନେଇ ଏହା ବିଶ୍ୱବିଖ୍ୟାତ । ମଣିଷ ଗିଳିଦିଏ ବୋଲି ବିଶ୍ୱାସ ହିଁ ଏ ସାପକୁ ଏତେ ନଜରକୁ ଆଣିଛି ।

ଆନାକୋଣ୍ଡାର ସାଧାରଣ ନାମ ଜଳବୋଆ (Water Boa) । ଏହା ମୁଖ୍ୟତଃ ଦୁଇ ପ୍ରକାର । ସାଧାରଣ ଆନାକୋଣ୍ଡା *(Eunectes murinus)* ଓ ହଳଦିଆ ଆନାକୋଣ୍ଡା (Yellow Anaconda ବା *Eunectes notaeus*) । ପୃଥିବୀରେ ଦେଖାଯାଇଥିବା ସବୁଠାରୁ ବଡ଼ ସାପର ଲମ୍ବ ପ୍ରାୟ ୨୫ଫୁଟ ।

୯୪. ବୋଡ଼ାସାପ କେତେ ପ୍ରକାର ? ଏମାନେ କ'ଣ ସାଂଘାତିକ ବିଷାକ୍ତ ?

ବୋଡ଼ାସାପକୁ ଇଂରାଜୀରେ ଭାଇପର (Viper) ବୋଲି କୁହାଯାଏ । ଆଣ୍ଡାମାନ ଦ୍ୱୀପପୁଞ୍ଜରେ ଗୋଟିଏ ଦ୍ୱୀପର ନାଆଁ ହେଉଛି ଭାଇପର ଦ୍ୱୀପ (Viper Island) । ବୋଧହୁଏ ସେ ଦ୍ୱୀପରେ ଅନେକ ସଂଖ୍ୟକ ବୋଡ଼ାସାପ

ଦେଖାଯାଉଥିଲେ ବୋଲି ଏପରି ନାମକରଣ କରାଯାଇଛି । ଏ ବୋଡ଼ାସାପ ଦୁଇପ୍ରକାର ଯଥା–(୧) ଗର୍ତ୍ତମସ୍ତକୀ ବୋଡ଼ା (Pit Viper) ଓ (୨) ଗର୍ତ୍ତବିହୀନ ବୋଡ଼ା (Pitless Viper) । ତେବେ ବୋଡ଼ା ସାପଗୁଡ଼ିକ ବିଷାକ୍ତ ।

୯୫. ଗର୍ତ୍ତମସ୍ତକୀ ବୋଡ଼ା କ'ଣ ?

ଗର୍ତ୍ତମସ୍ତକୀ ବୋଡ଼ାସାପର ମୁଣ୍ଡର ଆଖି ଓ ନାକ ମଝିରେ ଏକ ସ୍ପଷ୍ଟ ରନ୍ଧ୍ର ରହିଥିବାରୁ ଏପରି କୁହାଯାଏ । ଦୁଇକଡ଼କୁ ଗୋଟିଏ କରି ଦୁଇଟି ଏପରି ଗର୍ତ୍ତ ରହିଥାଏ । ଏ ସାପଗୁଡ଼ିକ ମୁଖ୍ୟତଃ ପାହାଡ଼ିଆ ଅଞ୍ଚଳରେ ଦେଖାଯାଆନ୍ତି । ଏ ଗର୍ତ୍ତ ପାଖରେ ଥିବା ଉଷ୍ମରକ୍ତ ବିଶିଷ୍ଟ ପ୍ରାଣୀମାନଙ୍କୁ ଜାଣିବାରେ ସାହାଯ୍ୟ କରେ ବୋଲି ଜଣାଯାଏ । ଏ ସାପଗୁଡ଼ିକ ଆକାରରେ ବଡ଼ । ମୁଣ୍ଡ ତିନିକୋଣିଆ ଓ କାତିରେ ପୂର୍ଣ୍ଣ । ଏମାନେ ମୁଖ୍ୟତଃ ଛୁଆ ଦିଅନ୍ତି । ସାଧାରଣ ଗର୍ତ୍ତମସ୍ତକୀ ବୋଡ଼ା ମୁଖ୍ୟତଃ ତିନିପ୍ରକାରର ।

(୧) ଧୂସର ହିମାଳୟ ଗର୍ତ୍ତମସ୍ତକୀ ବୋଡ଼ା (*Ancistrodon himalayanus*)
(୨) ଘୋଡ଼ାନାଲ ବୋଡ଼ା (*Lachesis strigatus*) ଓ
(୩) କଟକଟିଆ ବୋଡ଼ା ବା ରାଟଲ୍ ସାପ (*Crotalus*)

ଏମାନଙ୍କ ମଧ୍ୟରୁ ପ୍ରଥମ ଦୁଇଟି ଭାରତରେ ଦେଖାଯାଆନ୍ତି; ମାତ୍ର କଟକଟିଆ ବୋଡ଼ା ବା ରାଟଲ୍ ସାପ (Rattle Snake) ଆମେରିକା ଓ ଉତ୍ତର ମେକ୍ସିକୋ ଅଞ୍ଚଳରେ ଦେଖାଯାଆନ୍ତି ।

୯୬. ମାଟି ବିରାଳି କ'ଣ ଏକ ବିଷାକ୍ତ ସାପ ?

ମାଟି ବିରାଳି ଏକ ନିରୀହ ଓ ବିଷହୀନ ସାପ । ଓଡ଼ିଶାର ବିଭିନ୍ନ ସ୍ଥାନରେ ଏହା କାଉଚିଆ, ମୟୁରଭଞ୍ଜରେ ମାଟିବିରଡ଼ା ଓ ସମ୍ବଲପୁରରେ ବ୍ରାହ୍ମଣୀ ନାମରେ କଥିତ । ଏହାର ଇଂରାଜୀ ନାମ Striped Keelback ଓ ବୈଜ୍ଞାନିକ ନାମ *Natrix stolata* । ଏ ସାପ ଭାରତର ସର୍ବାଞ୍ଚଳ, ଉତ୍ତର ପଶ୍ଚିମ ସୀମାନ୍ତ ଅଞ୍ଚଳ, ଦକ୍ଷିଣ ଚୀନ, ଇଣ୍ଡୋଚୀନ, ଆଣ୍ଡାମାନ ଦ୍ୱୀପପୁଞ୍ଜ ଓ ସିଂହଳରେ ବାସ କରନ୍ତି । ଏ ସାପର କାତିର ମଝିଅଂଶ ଜାହାଜ ତଳର ମଝିପଟା (Keel) ପରି ହୋଇଥିବାରୁ ଦେହ ଅମସୃଣ । ପିଠିର ବର୍ଣ୍ଣ ଫିକା ହଳଦିଆ, ସବୁଜ ବା ବାଦାମୀ ସବୁଜ । ପିଠିରେ କଳାଚିହ୍ନ ବା ପଶାପାଲିର ଛକ ଚିହ୍ନ ପରି ଚିହ୍ନ ରହିଥାଏ । ମଝିରେ ହଳଦିଆ ଗାରମାନ ପଡ଼ିଥାଏ । ଦେହର ଶେଷଭାଗ ଆଡ଼କୁ ଏହି ଗାର ସୁସ୍ପଷ୍ଟ । ପେଟପାଖର ରଙ୍ଗ ଧଳା । ଆଖି ବଡ଼ ଓ ଆଖିପୁଅ ଗୋଲାକାର । ମାଟିବିରାଳିର

ପ୍ରଧାନ ଖାଦ୍ୟ ବେଙ୍ଗ ଓ ଲୁଣିବେଙ୍ଗ । ଏମାନେ ସାଧାରଣତଃ ଧାନବିଲ, ଫସଲ ଜମି ଓ ଘର ପାଖରେ ଦେଖାଯାଆନ୍ତି । ପାଣି ଭିତରେ ରହିବାକୁ ମଧ୍ୟ ଏହା ଭଲପାଏ । ଏହା ଦିବସିକ । ଏମାନେ ଏତେ ଧୀର ଯେ ହାତରେ ଧରିଲେ ମଧ୍ୟ କାମୁଡ଼ନ୍ତି ନାହିଁ । ତେବେ ରାଗିଲେ ଦେହ ଫୁଲାଇ ଦିଅନ୍ତି । ଏମାନେ ଥରକେ ୪୦ରୁ ୫୦ପର୍ଯ୍ୟନ୍ତ ଅଣ୍ଡା ଦିଅନ୍ତି । ଅନେକ ବିଷଧର କହିଲେ ବି ବାସ୍ତବରେ ଏହା ଏକ ବିଷହୀନ ସାପ ।

୯୭. ତେଲିଆ ଓ ଦୋମୁଣ୍ଡିଆ ସାପ କ'ଣ ସମାନ ?

ତେଲିଆ ସାପକୁ ଅନ୍ଧସାପ (Blind Snake) ବୋଲି ବୋଲାଯାଏ । ଏ ସାପମାନେ ପୃଥିବୀର ଅନେକ ଅଞ୍ଚଳରେ ଦେଖାଯାଆନ୍ତି । ଦକ୍ଷିଣ ୟୁରୋପ, ଦକ୍ଷିଣ ଏସିଆ, ଆଫ୍ରିକା, ଅଷ୍ଟ୍ରେଲିଆ, ଗ୍ରୀଷ୍ମ ମଣ୍ଡଳୀୟ ଆମେରିକା, ପଶ୍ଚିମ ଭାରତୀୟ ଦ୍ୱୀପପୁଞ୍ଜ ଓ ଜାପାନ ଏମାନଙ୍କର ବାସଭୂମି । ସାଧାରଣତଃ ଲୟରେ



ଦୋମୁଣ୍ଡିଆ ସାପ



ବିଷହୀନ ମାଟିରେ ଦେଖାଯାଉଥିବା ବିଳସାପ ବା ଅନ୍ଧସାପ

ଏମାନେ ଏକଫୁଟ ବା ୧୨ଇଞ୍ଚ ପର୍ଯ୍ୟନ୍ତ ଲମ୍ବ ହୁଅନ୍ତି । ଏମାନଙ୍କର ତଳପାଟିରେ ଦାନ୍ତ ଆଦୌ ନଥାଏ । ଉପର ପାଟିରେ ଥିବା ଦାନ୍ତ ଖୁବ୍ ଛୋଟ ଛୋଟ । ଆଉ ଏକପ୍ରକାର ଭୂଇଁତଳବାସୀ ତେଲିଆ ସାପ ଅଛନ୍ତି । ଦେଖିବାକୁ ସେମାନେ ତେଲିଆ ସାପ ପରି । ମାତ୍ର ସେମାନଙ୍କର ତଳପାଟିରେ ଦାନ୍ତ ଥାଏ; କିନ୍ତୁ ଉପର ପାଟିରେ ଦାନ୍ତ ନଥାଏ । ଅନେକ ଜାତି ତେଲିଆ ସାପଙ୍କ ଲାଞ୍ଜ ଅଗରେ ଗୋଟିଏ ଛୋଟ କଣ୍ଟା ଥାଏ । ଏହାକୁ ଭୂଇଁରେ ଲଗାଇ ଗତି କରିବାକୁ ସେମାନଙ୍କୁ ସୁବିଧା ହୁଏ । ତେଲିଆ ସାପ କ୍ଷୁଦ୍ର ଓ ବିଷହୀନ । ବାସ୍ତବରେ ତେଲିଆ ସାପ ଓ ଦୋମୁଣ୍ଡିଆ ସାପ ଦୁଇଟି ଅଲଗା ଅଲଗା ସାପ । ତେଲିଆର ବୈଜ୍ଞାନିକ ନାମ *Typhlops* ଓ ଦୋମୁଣ୍ଡିଆ ନାମ *Eryx johni* । ଦୋମୁଣ୍ଡିଆ ସାପ ଗାତ ଖୋଳି ରୁହେ ।

## ୯୮. ଅଜଗର ପୂଜା ସମ୍ପର୍କୀୟ କଥା କ'ଣ ସତ ?

ପ୍ରାଚୀନ କାଳରୁ ସମ୍ବଲପୁର ହୀରା ପାଇଁ ପ୍ରସିଦ୍ଧ । ହୀରା ଯୋଗୁଁ ସମ୍ବଲପୁରର ଗୋଟିଏ ସ୍ଥାନର ନାମ ହୀରାକୁଦ । ଖ୍ରୀଷ୍ଟାବ୍ଦର ପୂର୍ବବର୍ତ୍ତୀ କାଳରେ ରୋମ ସାମ୍ରାଜ୍ୟ ଯେତେବେଳେ ଯଶର ଶିଖରରେ ପହଞ୍ଚିଥିଲା, ସେତେବେଳେ ସମ୍ବଲପୁରର ଖଣିମାନଙ୍କରୁ ରୋମକୁ ହୀରା ପଠାଯାଉଥିଲା ବୋଲି ଇତିହାସରୁ ଜଣାପଡ଼େ । ଇଂରେଜମାନଙ୍କ ଅମଳରେ ଲର୍ଡ଼ କ୍ଲାଇବ୍‌ଙ୍କ ନିର୍ଦ୍ଦେଶରେ ଟମାସ୍ ମଟ (T. Motte) ନାମକ ବ୍ୟକ୍ତି ୧୭୬୬ ସାଲ ମାର୍ଚ୍ଚ ୧୩ତାରିଖରେ କଲିକତାରୁ ବାହାରି ଅଢ଼େଇମାସ ପରେ ସମ୍ବଲପୁରରେ ପହଞ୍ଚିଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ହୀରାଖଣି ଦେଖି ହୀରା ବ୍ୟବସାୟ କିପରି ହୋଇପାରିବ ସେ ସମ୍ପର୍କରେ ବିବରଣୀ ଦେବା । ସମ୍ବଲପୁରରୁ ଫେରିବାବେଳେ ଜୁଲାଇ ୧୯ତାରିଖରେ ନାଗବଂଶ ଦେଖିବାକୁ ଯାଇଥିଲେ । ଏହା ଗୋଟିଏ ବିରାଟ ସାପ ଓ ପାହାଡ଼ିଆ ଅଞ୍ଚଳର ରାଜାମାନେ ତାକୁ ପୂଜା କରନ୍ତି । ଲୋକଙ୍କର ବିଶ୍ୱାସ ଯେ ତାହା ପୃଥିବୀର ସୃଷ୍ଟିକାଳରୁ ଅଛି ଓ ତାର ମୃତ୍ୟୁରେ ପ୍ରଳୟ ହେବ । ସେ ସମୟରେ ହୀରା ସଂଗ୍ରହକାରୀମାନେ ସାପକୁ ପୂଜା ଦେଉଥିଲେ ଏବଂ ପୂଜା ନଦେଲେ ସେମାନଙ୍କର ହୀରା ଖୋଜା ବୃଥା ହେବ ବୋଲି ବିଶ୍ୱାସ କରୁଥିଲେ । ତେବେ ଏସବୁ ବିଶ୍ୱାସ ମାତ୍ର । ଏଥିରେ ସତ୍ୟତା ଥିବା କଥା ବଡ଼ କଷ୍ଟ ।

## ୯୯. ଲାଉଡ଼ଙ୍କ ସାପ କ'ଣ ଛୁଆ ଜନ୍ମ କରେ ?

ସରୀସୃପମାନେ ଅଣ୍ଡାପ୍ରସବୀ । ସେହିପରି ଅନେକ ସାପ ଅଣ୍ଡାଦେଲେ ବି ଖୁବ୍ କମ୍ ସଂଖ୍ୟକ ସାପ ଛୁଆ ଦେଇଥାଆନ୍ତି । ଲାଉଡ଼ଙ୍କ ସେପରି ଏକ ଛୁଆପ୍ରସବୀ ସାପ । ମାର୍ଚ୍ଚଠାରୁ ଡିସେମ୍ବର ମାସ ଭିତରେ ଥରକେ ୩ରୁ

୨୨ଯାଏ ସନ୍ତାନ ସେ ପ୍ରସବ କରିଥାଏ । ଲାଉଡ଼ଙ୍କ ଦିବସିକ । ଏହା ଚଳଚଞ୍ଚଳ, ଭୀଷଣ ଓ ସହଜରେ କାମୁଡ଼େ । ଭାରତ, ସିଂହଳ ଓ ପୂର୍ବଭାରତୀୟ ଦ୍ୱୀପପୁଞ୍ଜର ଲୋକଙ୍କର ବିଶ୍ୱାସ ଯେ ଏହା ଆଖିକୁ ଚୋଟ ମାରେ । ଏହା ଏକ ନିର୍ଭୀକ ସାପ । ଲାଉଡ଼ଙ୍କର ପ୍ରଧାନ ଖାଦ୍ୟ ହେଉଛି ଏଣ୍ଡୁଅ ଜାତୀୟ ସରୀସୃପ, ତୃଣଖାଦକ ଛୋଟ ଛୋଟ ସ୍ତନୀପାୟୀ ଓ ଛୋଟ ଛୋଟ ପକ୍ଷୀ । ଏହାର ବର୍ଣ୍ଣ ସବୁଜ ଓ ଗଛପତ୍ର ସହିତ ମିଶିଯିବାରୁ ତାକୁ ଗଛରୁ ଜୀବ ଧରିବାକୁ ଖୁବ୍ ସୁବିଧା ହୁଏ । ଏମାନେ ଖୁବ୍ ଉଚ୍ଚ ଗଛର ଡାଳରେ ମଧ୍ୟ ଦେଖାଯାଆନ୍ତି । ଏମାନଙ୍କର ନାସାଗ୍ର ଲମ୍ବା, ମୁନିଆ ଓ କ୍ଷୁଦ୍ର ମାଂସଳ ଉପାଙ୍ଗଯୁକ୍ତ ।

**୧୦୦. ଗୋଖର ସାପର କାହିଁକି ଫଣା ଅଛି ? ଅନ୍ୟ ସାପମାନଙ୍କର ଫଣା ଅଛି କି ନାହିଁ ?**

ନାଗସାପକୁ ଗୋଖର ବୋଲି ମଧ୍ୟ କୁହାଯାଏ । ନାଗ ହେଉଛି ମୁଣ୍ଡ ଫଣାରେ ଥିବା କଠଉ ଚିହ୍ନ ବିଶିଷ୍ଟ ଗୋଖର । ଗୋଖରର ବେକରେ ଥିବା କଠଉ ଚିହ୍ନ ଗୋରୁ ଖୁରା ଚିହ୍ନ ଭଳି ହୋଇଥିବାରୁ ବୋଧହୁଏ ଗୋଖୁର ଓ ସେଥିରୁ ଗୋଖର ନାମ ହୋଇଛି । ଓଡ଼ିଶାରେ ଗୋଖର କହିଲେ କଠଉ ଚିହ୍ନିତ ସାପକୁ ବୁଝାଏ । ଏକ ଚିହ୍ନ ବିଶିଷ୍ଟ (Monocellate) ଗୋଖର ତମ୍ପ ନାମରେ ପରିଚିତ ।



ଫଣାରେ କଠଉ ଚିହ୍ନଥିବା ନାଗ ସାପ



ନାଗ ପରିବାରର ତମ୍ପ ନାମକ ସାପ ଯାହା ମୁଣ୍ଡରେ ମୁଦି ପରି ଗୋଲାକାର ଚିହ୍ନ (Monocellate) ରହିଛି ।

ଗୋଖରର ବେକରେ ଲମ୍ୱା ପଞ୍ଜରା ହାଡ଼ (Ribs) ଅଛି । ଏଗୁଡ଼ିକ ଚଳନଶୀଳ । ସାପ ଧୀର ଥିବାବେଳେ ଏଗୁଡ଼ିକ ମେରୁଦଣ୍ଡ କଡ଼ରେ ଶାୟିତ ଭାବେ ରହିଯାଆନ୍ତି । ରାଗିଗଲେ ପଞ୍ଜରା ହାଡ଼ଗୁଡ଼ିକ ଦୁଇକଡ଼କୁ ପ୍ରସାରିତ ହୋଇଯାଏ । ଫଳରେ ଫଣା (Hood) ଗଠିତ ହୁଏ । ମଲା ସାପର ଏହି ପଞ୍ଜରାହାଡ଼କୁ ଆଗକୁ ନ ଠେଲିଲେ ଫଣା ଦେଖାଯାଏ ନାହିଁ । ଗୋଖର ବା ନାଗ ଓ ତମ୍ପ ଆଦି ସାପମାନେ ଫଣାଧାରୀ ସାପ (Hooded Snake) ଭାବରେ ଜଣାଶୁଣା । କେତେକ ଢମଣା ଜାତୀୟ ସାପ ଓ ଅନ୍ୟ ବିଷହୀନ ସାପଙ୍କୁ ବେଳେବେଳେ ଗୋଖର ବୋଲି ଭ୍ରମ ଧାରଣା ହୁଏ । କାରଣ କେତେକ ସାପ ବେକକୁ ଶକ୍ତ କରି ମଥା ଟେକି ରହିପାରନ୍ତି । ମାତ୍ର ବାସ୍ତବରେ ଏମାନେ ଫଣାବିହୀନ । ଗୋଖର ସାପଙ୍କୁ ବାଦ୍‌ଦେଲେ ଅନ୍ୟସାପଗୁଡ଼ିକ ମୁଖ୍ୟତଃ ଫଣାବିହୀନ ।

ଗୋଖରର ଫଣା ଉପରେ ଗୋରୁ ଖୁରା ପରି ଯେଉଁ ଚିହ୍ନ ଦେଖାଯାଏ ତାକୁ କେହି କେହି କାଳୀୟଦଳନ ବେଳର ଶ୍ରୀକୃଷ୍ଣଙ୍କ କଠଉ ଚିହ୍ନ ବୋଲି ମନେକରନ୍ତି । କିନ୍ତୁ ଏକଥାର କୌଣସି ବୈଜ୍ଞାନିକ ଭିତ୍ତି ନାହିଁ । ଭାରତରେ ଗୋଖର ସମ୍ୱନ୍ଧରେ କିମ୍ବଦନ୍ତୀ, ବିଶ୍ୱାସ, ପୌରାଣିକ ଗଳ୍ପ ଓ ଆଲୋଚନା ଏମିତି ଅନେକ ରହିଛି ଯାହା ଭିତ୍ତିହୀନ ।

❑❑❑

# ସାପମାନଙ୍କର ସାରକଥା

୧. ସାପମାନେ ଏକ ପ୍ରକାର ସରୀସୃପ ଶ୍ରେଣୀର ମେରୁଦଣ୍ଡୀ ଡରକୁଳା ପ୍ରାଣୀ ।

୨. ସେମାନଙ୍କର ଦୁଇଟି ଆଖି, ଦୁଇଟି ନାକପୁଡ଼ା ଥିବାବେଳେ ଗୋଡ଼, ବାହ୍ୟକର୍ଣ୍ଣ ଓ ଆଖିପତା ନଥାଏ ।

୩. ଆଖିଟି ଏକ ସ୍ୱଚ୍ଛ କାତି ଦ୍ୱାରା ଆବୃତ୍ତ ଥାଏ ଏବଂ ଆଖିର ପୁଅ ଗୋଲାକାର (Rounded) ଅଥବା ଲମ୍ବାଳିଆ (Vertical) ବା ଚଉଡ଼ାଳିଆ (Horizontal) ଭାବରେ ଚେପ୍‌ଟା ହୋଇପାରେ ।

୪. ସାପମାନେ ଏତେ ଭୀରୁ ଓ ଡରକୁଳା ଯେ ସେମାନେ ସାମାନ୍ୟ ଶବ୍ଦ ବା ଶତ୍ରୁର ସନ୍ଧାନ ପାଇଲେ ଲୁଚିଯିବାକୁ ଚେଷ୍ଟା କରନ୍ତି । ସେମାନଙ୍କୁ ଶତ୍ରୁ କବଳିତ କଲେ ବା କୁଦିଚକଟି ପକାଇଲେ ଶତ୍ରୁକୁ କାମୁଡ଼ି ନିଜକୁ ରକ୍ଷା କରିବାକୁ ଚେଷ୍ଟା କରନ୍ତି ।

୫. ସାପମାନେ ମାଂସାସୀ ଏବଂ ଶିକାରକୁ ସମ୍ପୂର୍ଣ୍ଣ ରୂପେ ଗିଳିପକାନ୍ତି ।

୬. ଚିକ୍‌କଣ ବା ମସୃଣ ଭୂଇଁରେ ଗତିକରିବା ସାପମାନଙ୍କ ପକ୍ଷେ କଷ୍ଟ ।

୭. ସାଧାରଣତଃ ଅଣ୍ଡାଦେବା ସାପମାନଙ୍କ ଅଭ୍ୟାସ । ତଥାପି ଚନ୍ଦ୍ରବୋଡ଼ା ପରି ଖୁବ୍ କମ୍ କେତେକ ସାପ ମଧ୍ୟ ଛୁଆ ଜନ୍ମ କରିଥାଆନ୍ତି ।

୮. ନାକପୁଡ଼ା ମଧ୍ୟଦେଇ ପବନ ଜୋର୍‌ରେ ବାହାର କରିବାରୁ ଫଁ ଫଁ ଶବ୍ଦ ଏମାନେ କରିପାରନ୍ତି । ସମସ୍ତ ଆଫ୍ରିକୀୟ ସାପମାନଙ୍କ ମଧ୍ୟର ଫୁଲାସାପ (Puffadder) ଓ ଭାରତୀୟ ସାପମାନଙ୍କ ମଧ୍ୟରେ ଚନ୍ଦନବୋଡ଼ା (Russell's Viper) ସବୁଠାରୁ ଜୋର୍‌ରେ ଫଁ ଫଁ ଶବ୍ଦ ସୃଷ୍ଟି କରିପାରନ୍ତି ।

୯. ସାପମାନେ ଚକ୍ଷୁଶ୍ରବା ଆଦୌ ନୁହଁନ୍ତି ।

୧୦. ନିଉଜିଲାଣ୍ଡରେ ସାପ ଆଦୌ ଦେଖାଯାଆନ୍ତି ନାହିଁ ଏବଂ ଆୟାର୍ଲାଣ୍ଡ ଓ ମାଡ଼ାଗାସ୍‌କାର ସ୍ଥାନରେ ବିଷାକ୍ତ ସାପ ଆଦୌ ଦେଖାଯାଆନ୍ତି ନାହିଁ ।

୧୧. ସାପମାନେ ମଧୁର ଜଳ, ସମୁଦ୍ର, ମାଟିତଳ ଗାତ, ଗଛ, ବୁଦା ଓ ମରୁଭୂମି ଆଦି ସବୁ ସ୍ଥାନରେ ଦେଖାଯାଆନ୍ତି ।

୧୨. କୌଣସି ସାପ ମୁଣ୍ଡରେ ମଣି ବୋଲି ମୂଲ୍ୟବାନ ପଥର ଆଦୌ ନଥାଏ ।

୧୩. ଅଧିକାଂଶ ସାପ ବିଷହୀନ । ବିଷାକ୍ତ ସାପମାନେ ହେଉଛନ୍ତି ନାଗ ବା ଗୋଖର, ରଣା, ଚିତି, ପ୍ରବାଳ ଓ ସମୁଦ୍ର ସାପ ।

୧୪. ସାପର ଦୁଇଟି ମୁଣ୍ଡ ଥାଇ ଦୋମୁଣ୍ଡିଆ ସାପ କଥା ଠିକ୍ ନୁହେଁ ।

୧୫. ପ୍ରତ୍ୟେକ ବିଷଧର ସାପର ଦୁଇଟି ବଡ଼ ବିଷଦାନ୍ତ ଥାଏ ।

୧୬. ଭାରତର ବିଷଧର ସାପମାନଙ୍କ ମଧ୍ୟରେ ଅହିରାଜ (King cobra) ଏକ ମୁଖ୍ୟ ବିଷଧର ସାପ ।

୧୭. ଅଷ୍ଟ୍ରେଲିଆରେ ଦେଖାଯାଉଥିବା ମୁଖ୍ୟ ବିଷଧର ସାପମାନଙ୍କ ମଧ୍ୟରେ ଦୁଇଟି ଖୁବ୍ ବିଷାକ୍ତ । ଗୋଟିଏ ହେଉଛି ଅଷ୍ଟ୍ରେଲୀୟ ବାଘ ସାପ (Australian Tiger Snake ବା *Notechis scutatus*) ଓ ଅନ୍ୟଟି ହେଉଛି ମୃତ୍ୟୁ ଆଡ଼ର (Death Adder ବା *Acanthophis antarcticus*) ।

୧୮. ଆଫ୍ରିକା ମହାଦେଶର ସବୁଠାରୁ ମାରାତ୍ମକ ସାପ ହେଉଛି ମାମ୍ବା (Mamba ବା *Dendraspis angusticeps*) ।

୧୯. ସାପମାନେ ସାଧାରଣତଃ ପକ୍ଷୀ ବା ଅନ୍ୟକେତେକ ପ୍ରାଣୀମାନଙ୍କ ପରି ବସା ତିଆରି କରନ୍ତି ନାହିଁ । କିନ୍ତୁ ସାପମାନଙ୍କ ମଧ୍ୟରେ ଗୋଟିଏ ପ୍ରକାର ସାପ ଦୁଇତାଲା ଘର ପରି ବସା ତିଆରି କରେ । ସେ ହେଉଛି ଅହିରାଜ ସାପ । ତଳ ତାଲାରେ ଅଣ୍ଡା ଦିଏ ଓ ଉପର ତାଲାରେ ସେ ଅଣ୍ଡାଗୁଡ଼ିକୁ ଜଗିରୁହେ ।

୨୦. ସାପମାନଙ୍କ ମଧ୍ୟରେ ଗଛରେ ରହୁଥିବା ଲାଉଡ଼ଙ୍କିଆ ସାପ ପରି ସାପମାନଙ୍କର ମୁଣ୍ଡଟିର ଆଗପଟ ମୁନିଆ ବା ତିନିକୋଣିଆ । ସେମାନେ ଖୁବ୍ ଜୋର୍‌ରେ ଗଛରେ ଯାଇଆସି ପାରନ୍ତି; ମାତ୍ର ଭୂଇଁରେ ଜୋର୍‌ରେ ଯାଇପାରନ୍ତି ନାହିଁ ।

୨୧. ଇଣ୍ଡୋନେସିଆର ସୁମାତ୍ରା ଜଙ୍ଗଲରୁ ୨୦୦୨ ମସିହାରେ ବିଶ୍ୱର ସବୁଠାରୁ ଲମ୍ୱା ଅଜଗର ସାପ ଧରାପଡ଼ିଛି । ଏହାର ଲମ୍ୱ ୧୪.୮୫ ମିଟର (ପ୍ରାୟ ପନ୍ଦର ମିଟର) ଓ ଓଜନ ୪୪୭ କିଲୋଗ୍ରାମ୍ । ଏହାକୁ ଏବେ ଜାଭାର କୁରୁଗେସୁ ମନୋରଞ୍ଜନ ପାର୍କରେ ରଖାଯାଇଛି ।



୨୦୦୩ ମସିହାରେ ସର୍ପମେଳାରେ ଏକ ବ୍ୟକ୍ତି ହାତରେ ସାପ ଧରି ଲୋକମାନଙ୍କୁ ଦେଖାଉଛନ୍ତି । ଏ ମେଳା କଲକାତାଠାରୁ ୮୦ କିଲୋମିଟର ଦୂର କଡ଼ାଇତଲାରେ ଆୟୋଜିତ । ଶତାଧିକ ସାପୁଆକେଳା ଓ ସେମାନଙ୍କ ପରିବାର ଏ ମେଳାରେ ଯୋଗ ଦେଇଥାନ୍ତି ।



# ସାପମାନଙ୍କ ସମ୍ବନ୍ଧରେ କଥାକୁହା କେତେକ ଭୁଲକଥା

୧. ସାପମାନେ ଆଖିରେ ଶୁଣନ୍ତି ନାହିଁ ।

୨. ସାପମାନେ ଗୋଡ଼େଇ ଗୋଡ଼େଇ କାମୁଡ଼ନ୍ତି ନାହିଁ ।

୩. ସାପମାନେ ମନେରଖି ଶତ୍ରୁକୁ ଦଂଶନ କରନ୍ତି ନାହିଁ ।

୪. ସାପମାନେ ଉଡ଼ିପାରନ୍ତି ନାହିଁ ।

୫. ସାପ ମୁଣ୍ଡରେ ମଣି ବା ମୂଲ୍ୟବାନ ପଥର ନଥାଏ ।

୬. ସାପ ଗାଈ ପହ୍ଲାରୁ କ୍ଷୀର ପିଏନାହିଁ ।

୭. ନାଗ ଓ ଢମଣା ସାପଙ୍କର ଅଥବା ଦୁଇଟି ଭିନ୍ନ ପ୍ରଜାତି ସାପ ମଧ୍ୟରେ ମିଳନ ହୁଏନାହିଁ ।

୮. ସାପକାମୁଡ଼ା ହିଁ ଗୁଣିଗାରେଡ଼ି, ଝଡ଼ାଫୁଙ୍କା ଓ ମନ୍ତ୍ର ଆଦିରେ ଭଲ ହୁଏନାହିଁ ।

୯. ସାପ ଶରୀରରେ କେଶ ଆଦୌ ଦେଖାଯାଏ ନାହିଁ ।

୧୦. ସାପ ବିଷଦାନ୍ତ ଭାଙ୍ଗିଦେଲେ ବିଷ ଚାଲିଯାଏ ନାହିଁ । ବିଷଦାନ୍ତ ପୁଣି ଗଜୁରି ଉଠେ ।

୧୧. ଫଁ ଫଁ ଶବ୍ଦରେ କୌଣସି ପ୍ରାଣୀ ଟାଣି ହୋଇ ସାପ ପାଖକୁ ଆସିପାରନ୍ତି ନାହିଁ ।

୧୨. ଲାଉଡ଼ଙ୍କିଆ ସାପ ଆଖିକୁ ମାରେନାହିଁ ବା କାମୁଡ଼ି ଖାଇଯାଏ ନାହିଁ ।

୧୩. ଅଜଗର ସାପର ଲାଞ୍ଜପାଖରେ ଥିବା କଣ୍ଟା କାନଖରାପ ଥିବା ବ୍ୟକ୍ତି ବା ପିଲାର କାନରେ ପୁରାଇଦେଲେ ଖରାପ କାନ ଭଲ ହୋଇଯାଏ ନାହିଁ ।

୧୪. କେତେକ ଲୋକ ସାପ ଦେଖିଲେ ବା ସାପ ଲୋକମାନଙ୍କୁ ଦେଖିଲେ ବିଶେଷକରି ଦୁଇଟି ସାପ ଗୁଡ଼ାଗୁଡ଼ି ହୋଇଥିଲେ ସେମାନଙ୍କୁ ମାରି ପୋଡ଼ି

ଦେଇଥାଆନ୍ତି । ନ ପୋଡ଼ିଲେ ସେ ସାପ ଆସି କାମୁଡ଼ିବ ବୋଲି ଅନେକଙ୍କ ଧାରଣା । ଏହି ଧାରଣା ଅଯୌକ୍ତିକ ଓ ଭିତ୍ତିହୀନ ।

୧୫. କ୍ୟାମେରାରେ ଛବି ରହିଯିବା ପରି ସାପ ଥରେ ଦେଖିଲେ ବା ମାରିଥିବା ବ୍ୟକ୍ତିକୁ ସାପମାନେ ଭଲଭାବରେ ମନେ ରଖନ୍ତି । ଖୋଜି ଖୋଜି ସେ ବ୍ୟକ୍ତିକୁ ସାପ ଦଂଶନ କରିଥାଏ । ଏହା ଏକ କପୋଳକଳ୍ପିତ କଥା । କ୍ୟାମେରା ପରି ସାପ ମନରେ ଛବି ରହିଯାଏ ନାହିଁ ।

୧୬. ଭାରତରେ ଯେତେ ସାପ ଅଛନ୍ତି, ସେମାନଙ୍କ ମଧ୍ୟରେ ଚନ୍ଦ୍ରବୋଡ଼ା ସାପର ଫଁ ଫଁ ଗର୍ଜନ ସବୁଠାରୁ ବେଶୀ ପ୍ରଚଣ୍ଡ ଓ ଭୟଙ୍କର । କିନ୍ତୁ ସେମାନେ ପାଟିରେ ଗର୍ଜନ କରନ୍ତି ନାହିଁ । ନାକପୁଡ଼ା ଦେଇ ପବନ ଖୁବ୍ ଜୋର୍‌ରେ ବାହାରିବାରୁ ଏପରି ଶବ୍ଦ ସୃଷ୍ଟି ହୋଇଥାଏ ।

୧୭. ଗୋଖର ଶିବଙ୍କ ପ୍ରିୟ । ତେଣୁ ମହାଦେବଙ୍କ ଶରୀରରେ ଗୋଖର ଗୁଡ଼େଇ ହୋଇ ରହିଥିବାର ଦେଖାଯାଏ । ମନ୍ଦିର ଓ ଛବି ଆଦିରେ ଏହା ଦେଖିବାକୁ ମିଳେ । ତେଣୁ ମହାଦେବଙ୍କ ସହିତ ଗୋଖର ମଧ୍ୟ ପୂଜାପାଏ । ପୁରୁଷ ଜନନେନ୍ଦ୍ରିୟ ସହିତ ଏହାର ସାମଞ୍ଜସ୍ୟ ଥିବାରୁ ହୁଏତ ଲିଙ୍ଗପୂଜା ବା ଶକ୍ତିପୂଜା ସହିତ ଗୋଖର ସଂଶ୍ଳିଷ୍ଟ । ବାଇବେଲ ଅନୁସାରେ ସର୍ପ ଆଦିନାରୀ ଇଭ୍‌ଙ୍କୁ ଜ୍ଞାନବୃକ୍ଷର ଫଳ ଖୁଆଇ ମନୁଷ୍ୟକୁ ଭ୍ରଷ୍ଟ କରାଇଲା । ଆଧୁନିକ ମନସ୍ତତ୍ତ୍ୱବିତ୍‌ମାନେ ଏହି ସର୍ପ ମନୁଷ୍ୟର ଯୌନ ଜ୍ଞାନର ପ୍ରତୀକ ବୋଲି ଧରୁଛନ୍ତି । ତେବେ ଏ କେତେକ କଥାର ସତ୍ୟତା ଠିକ୍ ଜଣାପଡ଼େ ନାହିଁ ।

୧୮. ଲୋକଙ୍କର ବିଶ୍ୱାସ ଯେ ଢମଣା ଓ ଗୋଖର ରମଣ ଯେ ଦେଖେ ତାର ଆଖି ଫୁଟିଯାଏ । ଓଡ଼ିଶା ଓ ବଙ୍ଗଳାର ଲୋକେ ବିଶ୍ୱାସ କରନ୍ତି ଯେ ସର୍ପ ରମଣ ବେଳେ ଗାମୁଛା ବା ଲୁଗା ସାପମାନଙ୍କ ଉପରକୁ ପକାଇଦେବାକୁ ହେବ ବା ପାଖରେ ବିଛାଇଦେବ । ସାପ ତା ଉପରେ ସଙ୍ଗମ କଲେ ଓ ସେହି ଲୁଗାକୁ ଶୁଭକାର୍ଯ୍ୟରେ ବାହାରିବା ସମୟରେ କାନ୍ଧରେ ପକାଇଗଲେ ଶୁଭଫଳ ମିଳେ । ଏହା ଅମୂଳକ ।

୧୯. ସାପମାନଙ୍କ ମଧ୍ୟରେ ପୁରୁଷ, ସ୍ତ୍ରୀ ଓ କ୍ଲୀବ ଜାତି ଅଛି ବୋଲି ବଙ୍ଗଦେଶର ଲୋକମାନଙ୍କର ବିଶ୍ୱାସ । ଏମାନେ ସ୍ୱଜାତି ନ ପାଇଲେ ଅନ୍ୟ ଜାତି ସାପ ସହିତ ମଧ୍ୟ ସଙ୍ଗମ କରନ୍ତି । ଅନେକ ସ୍ଥାନରେ ଏବେ ବି ବିଶ୍ୱାସ

ଯେ ବିଷହୀନ ଢମଣା ଗୋଟିଏ ପୁରୁଷ ଗୋଖର ଏବଂ ପୁରୁଷ ଢମଣା ଓ ସ୍ତ୍ରୀ ଗୋଖର ମଧ୍ୟରେ ମିଳନ ହୁଏ । ଢମଣାର ବର୍ଣ୍ଣ ଗୋଖର ସହ ମିଶିଯାଏ ବୋଲି ବୋଧହୁଏ ଏପରି ବିଶ୍ୱାସର ସୃଷ୍ଟି । ଗୋଟିଏ ଜାତି ସାପ ସହିତ ଅନ୍ୟ ଗୋଟିଏ ଜାତି ସାପର ମିଳନ ଅପ୍ରାକୃତିକ ଓ ଅସମ୍ଭବ । କ୍ଲୀବ ସାପ କଥା ମଧ୍ୟ ଠିକ୍ ନୁହେଁ ।

୨୦. ଓଡ଼ିଶାର କେତେକ ଅଞ୍ଚଳରେ ବିଶେଷକରି ଗାଁଗହଳି ସ୍ଥାନରେ ବିଶ୍ୱାସ ଯେ ଗୋଖର ପୁରୁଷ ସନ୍ତାନମାନଙ୍କ ଭାଗ୍ୟନିୟନ୍ତା । ଗୋଖର ସାପ ମାରିବା ଲୋକର କୋଡ଼ିଏ ପୁରୁଷ ଯାଏ ପୁତ୍ର ସନ୍ତାନ ଜନ୍ମ ହୁଏନାହିଁ । ଏହା ସମ୍ପୂର୍ଣ୍ଣ ଭୁଲ କଥା । ଏକଥା ବିଶ୍ୱାସ କରିବା ଠିକ୍ ନୁହେଁ ।

୨୧. କଥାରେ କୁହାଯାଏ ଯେ, ନାଗ କୌଣସି ବ୍ୟକ୍ତିର ମୁଣ୍ଡ ଉପରେ ଫଣା ଟେକି ଖରାଦାଉରୁ ନିଦ୍ରିତ ଲୋକକୁ ଆଡ଼କଲେ ସେ ଲୋକ ରାଜା ହୁଏ । ଆମ ସମାଜରେ ଏକ ଲୋକଶୁଣା କଥା ଯେ, ଓଡ଼ିଶାର ରାଜା କପିଳେନ୍ଦ୍ର ଦେବ ଗାଈଆଳ ପିଲାରୂପେ ଶୋଇଥିଲା ବେଳେ ଏପରି ଘଟିଥିଲା । ତେବେ ଏହା ଏକ ପରିସ୍ଥିତି ହୋଇପାରେ । ସବୁବେଳେ ଯେ ଏହା ଘଟିବ ତାହାର କୌଣସି ସତ୍ୟାସତ୍ୟ ନାହିଁ କି ଏହା ବିଶ୍ୱାସଯୋଗ୍ୟ ନୁହେଁ ।

୨୨. ଲୋକକଥାରେ ଶୁଣାଯାଏ ଯେ, ସାପ ଯେତେ ବେଶୀ ଲୋକଙ୍କୁ କାମୁଡ଼ିବ ତାର ଲାଞ୍ଜ ସେତେ ଛିଣ୍ଡି ଛିଣ୍ଡି ଯାଏ । ଏହା ଠିକ୍ କଥା ନୁହେଁ ।

୨୩. ଗୋଖର ପ୍ରତିହିଂସାପରାୟଣ ବୋଲି କେତେକଙ୍କ ଧାରଣା । ସେମାନଙ୍କୁ ଆଘାତ କଲେ ବା ବାଡ଼େଇ ଖଣ୍ଡିଆଖାବରା କରି ଛାଡ଼ିଦେଲେ ସେମାନେ ମନେରଖି ସୁଯୋଗ ଦେଖି ଦଂଶନ କରନ୍ତି । ଏପରି ପ୍ରତିଶୋଧମୂଳକ କଥା ଅତିରଞ୍ଜିତ ।

୨୪. ନାଗପଞ୍ଚମୀ (ଶ୍ରାବଣ କୃଷ୍ଣପଞ୍ଚମୀ)ରେ ନାଗକୁ ସିଜୁ ଗଛମୂଳେ ପୂଜା କରାଯାଏ । ଘରେ ନିମପତ୍ର ଆଣି ରଖିଲେ ବର୍ଷକ ପର୍ଯ୍ୟନ୍ତ ସାପ ଭୟ ନଥାଏ ବୋଲି ଲୋକବିଶ୍ୱାସ । ଏହା ଏକ ଭ୍ରମାତ୍ମକ କଥା । ଯାହା କଲେ ବି ବେଙ୍ଗ ଓ ମୂଷା ଇତ୍ୟାଦି ଖାଦ୍ୟର ସନ୍ଧାନ ପାଇଲେ ସାପ ଆସିବାର ସମ୍ଭାବନା ଥାଏ ।

୨୫. ହିନ୍ଦୁମାନଙ୍କର ବିଶ୍ୱାସ ଘରେ ବାସ କରୁଥିବା ଗୋଖର କାହାର କିଛି କ୍ଷତି କରେନାହିଁ ଏବଂ ତାକୁ ମାରିଲେ ଲକ୍ଷ୍ମୀଛଡ଼ା ହୋଇଯାଆନ୍ତି । ଘର

ଦରିଦ୍ର ହୋଇଯାଏ । ଜବାହରଲାଲଙ୍କ ଭଗିନୀ କ୍ରିଷ୍ଣା ହାତୀସିଂ ତାଙ୍କର 'ଶୋଚନା ନାହିଁ' ପୁସ୍ତକରେ ନେହେରୁ ପରିବାରର ଆଲାହାବାଦ ବାସଭବନ 'ଆନନ୍ଦ ଭବନ'ରେ ଏକ ଗୋଖର ସାପ ବହୁକାଳ ରହିଥିବାରୁ ତାହା ନେହେରୁ ବଂଶର ଯଶର କାରଣ ବୋଲି କୌତୁହଳପୂର୍ଣ୍ଣ କଥା ବର୍ଣ୍ଣିତ ଅଛି ।

୨୬. ସାପ ରାଗିଲେ ବା ଦଂଶନ କରିବାକୁ ଉଦ୍ୟତ ହେଲେ ଫଁ ଫଁ ଶବ୍ଦ କରି ଡରାଇଥାଏ । ମୟୁରଭଞ୍ଜରେ ଆଦିବାସୀ ଲୋକଙ୍କର ଧାରଣା ଗୋଖର ରାତିରେ ଖାଦ୍ୟ ଅନ୍ୱେଷଣରେ ବାହାରିବା ବେଳେ ଏକପ୍ରକାର ଶବ୍ଦ କରେ । ସେ ଶବ୍ଦ ଟେବୁଲ ପଙ୍ଖାର ବୁଲିବା ଶବ୍ଦ ପରି । ତେବେ ଏ କଥାର କୌଣସି ପ୍ରମାଣ ଏ ପର୍ଯ୍ୟନ୍ତ ମିଳିନାହିଁ ।

୨୭. ତେଲିଆ ସାପକୁ ଦୋମୁହାଁ ବା ଦୋମୁଣ୍ଡିଆ ସାପ କୁହାଯାଏ । ଏହାକୁ ଅନେକ ଅନ୍ଧସାପ ବୋଲି କହିଥାଆନ୍ତି । ଏପରି ଅନ୍ଧସାପ କହିବାର କାରଣ ଏମାନଙ୍କର ଆଖି ଏତେ ସାନ ଯେ ମନେହୁଏ ସତେଯେପରି ଏମାନେ ଚକ୍ଷୁହୀନ । ଏପରି ନାମ ଭୁଲ ଧାରଣା ଉପରେ ପର୍ଯ୍ୟବେସିତ । ଏମାନଙ୍କର ଅନ୍ୟ ସାପମାନଙ୍କ ପରି ଆଖି ଥାଏ ।

୨୮. ଭାରତରେ କେତେକ ଅଞ୍ଚଳରେ ବିଶ୍ୱାସ ଅଛି ଯେ ୪୦ରୁ ଉର୍ଦ୍ଧ୍ୱ ବୟସ୍କ ଲୋକକୁ ଢମଣା (Rattle Snake) କାମୁଡ଼ିଲେ ସେ ଅନ୍ଧ ହୋଇଥାଏ । ଏହା ମଧ୍ୟ ଆଉ ଏକ ଭ୍ରମଧାରଣା ।

୨୯. କେତେକ କୁହନ୍ତି ଢମଣା ସାପ କାମୁଡ଼େ ନାହିଁ । ପ୍ରକୃତରେ ଏହା ଗୋଡ଼ରେ ଗୁଡ଼େଇ ହୋଇଯାଇ ଲାଞ୍ଜକୁ ଚାବୁକ ପରି ବ୍ୟବହାର କରେ ଓ କାମୁଡ଼େ । ହୁଏତ ଏହି କାରଣରୁ ମଧ୍ୟ ଢମଣା ଗାଈ ଗୋଡ଼ରେ ଛନ୍ଦି ହୋଇଯାଇ ପହ୍ନାରୁ ଦୁଧ ପିଇଯାଏ ବୋଲି ବିଶ୍ୱାସ ଜନ୍ମିଅଛି । ଏପରିକି ଏମିତି ବି ଧାରଣା ରହିଛି ଯେ, ଢମଣା ଗାଈଗୋଡ଼ରେ ଛନ୍ଦି ହୋଇ ଦୁଧ ପିଇଦିଏ ବୋଲି ଗାଈ ଦୁଧ ଦେବା ବନ୍ଦ କରିଦିଏ । ଏହା ଗାଈ ନାକ ଭିତରେ ଲାଞ୍ଜ ପୁରାଇ ହଠାତ୍ କାଢ଼ି ଆଣିବାରୁ ଗାଈ ମରିଯାଏ । ଏପରି ବିଶ୍ୱାସ ଭାରତରେ ସର୍ବତ୍ର ରହିଛି । ଢମଣା ଏକ ସାଧାରଣ ସାପ ଓ ଖୋଲା ସ୍ଥାନରେ ଦେଖିବାକୁ ମିଳେ । ଗାଈଆଳ ପିଲାଙ୍କ ନଜରରେ ଏ ସାପ ବେଶୀ ପଡ଼ିଥିବାରୁ ଏପରି ବିଶ୍ୱାସର ଉତ୍ପତ୍ତି ହୋଇଛି । ମାତ୍ର ଏସବୁ କଥାର କୌଣସି ସତ୍ୟତା ଜଣାପଡ଼େ ନାହିଁ ।

୩୦. 'ଉଷା' କାବ୍ୟରେ କବିବର ରାଧାନାଥ ଉଲ୍ଲେଖ କରିଛନ୍ତି–

''ଅଯାଚିତ ବୃତ୍ତି ଅଜଗର, ତୃଣ ଭୂମିରେ ଲାଖି
ଓଟାରିବା ଆଶେ ଶ୍ୱାସେ ମୃଗ ଯହିଁ ରହନ୍ତି ଟାକି ।''

ଅର୍ଥାତ୍, ତୃଣ ଭୂମିରେ ଅଜଗର ହରିଣ ଖାଇବା ପାଇଁ ପଡ଼ିରହିବାର ଜଣାନାହିଁ ଓ ଅଜଗର ଖାଦ୍ୟ ଜୀବକୁ ତାର ପ୍ରଶ୍ୱାସ ଦ୍ୱାରା ପାଖକୁ ଟାଣି ନେବାର ବିଶ୍ୱାସ ପୁରାପୁରି ଭିତ୍ତିହୀନ ।

୩୧. ଦୋମୁଣ୍ଡିଆ ସାପ ସମ୍ବନ୍ଧରେ ବିଶ୍ୱାସ ଯେ, ଏ ସାପର ଦୁଇଟି ମୁଣ୍ଡ ଥାଏ । ଗୋଟିଏ ମୁଣ୍ଡରେ ସେ ଗୋଟିଏ ଦିଗରେ ଚାଲିପାରେ ଓ ଖାଇପାରେ ଏବଂ ଅପର ଦିଗରେ ଠିକ୍ ସେହିପରି ଚାଲିପାରେ ଓ ଖାଇପାରେ । ଗୋଟିଏ ମୁହଁରେ ଛଅମାସ ଖାଏ ଓ ସେ ମୁଣ୍ଡରେ ମୁହଁକରି ଚାଲେ ଏବଂ ଆର ଛଅ ମାସ ଆରପାଖକୁ ମୁଣ୍ଡକରି ଚାଲେ ଓ ସେ ମୁହଁରେ ମଧ ଖାଏ । ତେବେ ଏକଥା ଏକ ଅନ୍ଧବିଶ୍ୱାସ ।

୩୨. ସାପ କାମୁଡ଼ିଲେ ଗାଁରେ ଲୋକେ ମହାଦେବଙ୍କ ମନ୍ଦିରକୁ ଦଂଶିତ ବ୍ୟକ୍ତିକୁ ନେଇଯାଆନ୍ତି । ସେଠାରେ ଗୁଣିଗାରେଡ଼ି କରାଯାଏ । ରୋଗୀ ଉପରେ ଗରା ଗରା ବା ମାଠିଆ ମାଠିଆ ପାଣି ଲଗାତାର ଢଳାଯାଏ । ତେବେ ଏସବୁ ନକରି ଡାକ୍ତରଖାନାକୁ ନେଇ ଚିକିତ୍ସା କରିବା ଆବଶ୍ୟକ । ଗୁଣିଗାରେଡ଼ି ଓ ମନ୍ତ୍ର ଆଦି ମାଧମରେ ରୋଗୀ ବା ଦଂଶିତ ବ୍ୟକ୍ତିକୁ ଭଲ କରିବା କଥା ଚିନ୍ତା କରିବା ଅଯୌକ୍ତିକ । ଏପରି କରିବା ଫଳରେ ବିଷାକ୍ତ ସାପ କାମୁଡ଼ିଥିଲେ ଦଂଶିତ ବ୍ୟକ୍ତି ମରିଯିବାର ସମ୍ଭାବନା ଅଧିକ ଥାଏ । ଏସବୁଗୁଡ଼ିକ ଭୁଲ୍ ପଦକ୍ଷେପ ।

୩୩. ସବୁ ସାପ ମାଂସାସୀ । ସେମାନେ ଜୀବନ୍ତ ପ୍ରାଣୀମାନଙ୍କୁ ଗିଳି ଖାଇବାକୁ ଭଲପାଆନ୍ତି । ଅନେକ କୁହନ୍ତି ସେମାନେ କ୍ଷୀର ପିଅନ୍ତି ବୋଲି । ମାତ୍ର ତାହା ଠିକ୍ ନୁହେଁ । ଖାଦ୍ୟ ନ ପାଇଲେ କ୍ଷୀର ଦେଲେ ସେମାନେ ପିଇ ପାରନ୍ତି । କିନ୍ତୁ କ୍ଷୀରକୁ ସାପମାନେ ଭଲ ପାଆନ୍ତି ନାହିଁ କି ପିଇବା ତାଙ୍କର ପ୍ରିୟ ନୁହେଁ ।

୩୪. ମହାଦେବ ବା ଠାକୁର ଠାକୁରାଣୀଙ୍କୁ ବିଶ୍ୱାସ କରୁଥିବା ଲୋକମାନଙ୍କ ଯୁକ୍ତି ଯେ, ସାପମାନେ ଶିବ ମନ୍ଦିରରେ ରହିବାକୁ ଭଲ ପାଆନ୍ତି । କଥା ହେଉଛି, ମନ୍ଦିର, ଦେବାଳୟ ତଥା ଠାକୁର ଠାକୁରାଣୀମାନଙ୍କ

ସ୍ଥାନଗୁଡ଼ିକ ପ୍ରାୟ ପୁରୁଣା ଥାଏ । ତାର କାନ୍ଥଗୁଡ଼ିକ ଫାଟି ଫାଟ ସୃଷ୍ଟି ହୋଇଥିବା ସହ ଭିତର ସ୍ଥାନଗୁଡ଼ିକ ଅନ୍ଧାରିଆ ଓ କଳା ବା ଅପରିଷ୍କାର ହୋଇଥାଏ । କାନ୍ଥଗୁଡ଼ିକରେ ଫାଟ ଥିବାରୁ ସାପମାନେ ଲୁଚି ରହିବା ପାଇଁ ବେଶ୍ ଭଲ ସ୍ଥାନ ପାଇଯାଇ ଥାଆନ୍ତି । ମନ୍ଦିରର ଭିତର ଅଂଶ ଥଣ୍ଡା ଓ ଅନ୍ଧାର ହୋଇଥିବାରୁ ଗ୍ରୀଷ୍ମଦିନେ ସେ ଜାଗା ସାପମାନଙ୍କ ପାଇଁ ଆମୋଦଦାୟକ ସ୍ଥାନ ହୋଇଥାଏ । ପାଣିରେ ରହୁଥିବା ସାପଗୁଡ଼ିକ (ଧଣ୍ଡ ପରି ସାପମାନେ) ଶିବ ମନ୍ଦିରର ପାଣି ନିର୍ଗତ ହେଉଥିବା ଶିବଲିଙ୍ଗ ପାଖରେ ରହିଥାଆନ୍ତି ବା ପାଣି ବାହାରୁ ଥିବାରୁ ସେଠାରେ ଗୁଡ଼େଇ ହୋଇ ରହିବାକୁ ଭଲ ପାଆନ୍ତି । ତେଣୁ ପୂଜକମାନଙ୍କ ଆଖିରେ ବା ଭକ୍ତମାନଙ୍କ ଦୃଷ୍ଟିରେ ଏପରି ସ୍ଥାନରେ ସାପମାନେ ଆସିଲେ ସେମାନେ କହିଥାଆନ୍ତି ଯେ, ଶିବଙ୍କର ସାପ ପ୍ରିୟ ବୋଲି ସାପ ଏପରି ଶିବଶକ୍ତି ବା ଶିବ ମନ୍ଦିରରେ ଦେଖାଯାଆନ୍ତି ବୋଲି । ତେବେ ମୋଟାମୋଟି ଏହା ଏକ ଅଯୌକ୍ତିକ ମତ ।

୩୫. ବିଶ୍ୱାସ କେତେକ କରନ୍ତି ଯେ, ପୁରୁଣା ଗୋଖର ବା ନାଗ ସାପର ଲାଞ୍ଜ ଧୀରେ ଧୀରେ ଛିଡ଼ିଯାଏ ଓ ଡେଣା ଦେହରେ ଲାଗିଯାଏ । ଏପରି କଥା ଆଦୌ ଠିକ୍ ନୁହେଁ । ଲାଞ୍ଜ ଏପରି ଛିଡ଼ି ଛିଡ଼ି ଯାଏ ନାହିଁ କି ସାପମାନଙ୍କର ଡେଣା ଲାଗେ ନାହିଁ ।





## ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି

ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ ଜନ୍ମ ୧୯୫୮ ମସିହା ଶ୍ରୀକ୍ଷେତ୍ର ପୁରୀରେ । ବିଜ୍ଞାନରେ ସ୍ନାତକ ଶିକ୍ଷା ପରେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରାଣୀବିଜ୍ଞାନ ବିଭାଗରୁ ସ୍ନାତକୋତ୍ତର ଶିକ୍ଷା ସମାପ୍ତି ୧୯୮୦ ମସିହାରେ । ସ୍ନାତକୋତ୍ତର ଶିକ୍ଷା ପରେ ୧୯୮୧ ମସିହାରେ ଯୋଗ ଦିଅନ୍ତି ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରାଣୀବିଜ୍ଞାନ ବିଭାଗରେ ଅଧ୍ୟାପକ ଭାବରେ । ଅଧ୍ୟାପନା ସମୟରେ ସେହି ବିଶ୍ୱବିଦ୍ୟାଳୟରୁ ବିଦ୍ୟାଭୂଷଣ (M. Phil) ତଥା ଜର୍ମାନ ଭାଷାରେ ସାର୍ଟିଫିକେଟ ଉପାଧି ହାସଲ କରନ୍ତି । ଟସର ରେଶମ ଚାଷ ସମ୍ପର୍କରେ ଗବେଷଣା ଯୋଗୁଁ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ବିଦ୍ୟାଭୂଷଣ (Ph. D) ଉପାଧିରେ ଭୂଷିତ । ଏହା ବ୍ୟତୀତ ସେ ଇନ୍ଦିରାଗାନ୍ଧୀ ମୁକ୍ତ ବିଶ୍ୱବିଦ୍ୟାଳୟରୁ ଦୂରଶିକ୍ଷାରେ ସ୍ନାତକୋତ୍ତର ଉପାଧି ହାସଲ କରିବାରେ ସଫଳ । ଅଧ୍ୟାପକ ହିସାବରେ ରେଶମ ଚାଷ, ଉତ୍ପାଦନକାରୀ କୀଟମାନଙ୍କ ସଂରକ୍ଷଣ ମାଧ୍ୟମରେ ପରିପୋଷଣକାରୀ ବିକାଶ ଓ ବିଭିନ୍ନ ଜୀବଙ୍କର ତଥା କୋଷ ଅନୁବଂଶ ବିଜ୍ଞାନ ସମ୍ବନ୍ଧରେ ସେ ଗବେଷଣାରତ ।

ଲେଖକ ଭାବରେ ଡକ୍ଟର ମହାନ୍ତିଙ୍କ ପ୍ରାୟ ୨୦୦ ପ୍ରବନ୍ଧ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ । ଏହା ସହ ଦୂରଦର୍ଶନ ଓ ଆକାଶବାଣୀର ଜୀବବିଜ୍ଞାନ କାର୍ଯ୍ୟକ୍ରମ ସହ ସେ ସଂଶ୍ଳିଷ୍ଟ । ଜନପ୍ରିୟ ବିଜ୍ଞାନ ପ୍ରକାଶନ ନିମନ୍ତେ ଓଡ଼ିଶା ବିଜ୍ଞାନ ପ୍ରଚାର ସମିତି ୧୯୯୨ ମସିହାରେ ଲେଖକଙ୍କୁ ସମ୍ବର୍ଦ୍ଧିତ କରିବା ସହ ୧୯୯୮ ମସିହାରେ ଶ୍ରେଷ୍ଠ ବିଜ୍ଞାନ ଲେଖକ ହିସାବରେ ଡଃ ଗୋପାଳ ଚନ୍ଦ୍ର ପଟ୍ଟନାୟକ ସ୍ମାରକୀ ପୁରସ୍କାର ପ୍ରଦାନ କରିଛନ୍ତି । ଓଡ଼ିଆ ଭାଷାରେ ଜନାଦୃତ ପୁସ୍ତକ ରଚନା ନିମିତ୍ତ ୨୦୦୧ ମସିହାରେ ଲେଖକ ରାଜ୍ୟ ସରକାରଙ୍କ ବିଜ୍ଞାନ ଓ ବୈଷୟିକ ବିଭାଗ ଦ୍ୱାରା ପୁରସ୍କୃତ । ବିଜ୍ଞାନକୁ ଲୋକପ୍ରିୟ କରିବାରେ ନିରବଚ୍ଛିନ୍ନ ପ୍ରୟାସ ଯୋଗୁଁ ୨୦୦୨ ମସିହାରେ ବିଜ୍ଞାନ ପ୍ରଚାର ସମିତି, କଟକ ତରଫରୁ ଲେଖକ ଡକ୍ଟର ଗୋକୁଳାନନ୍ଦ ମହାପାତ୍ର ପ୍ଲାଟିନମ୍ ଜୟନ୍ତୀ ପୁରସ୍କାର ପ୍ରାପ୍ତ ।

ବିଜ୍ଞାନ ଲେଖା ସହ ଡକ୍ଟର ମହାନ୍ତିଙ୍କର ପଚିଶରୁ ଊର୍ଦ୍ଧ୍ୱ ଗବେଷଣାମୂଳକ ନିବନ୍ଧ ବିଭିନ୍ନ ପତ୍ରିକାରେ ପ୍ରକାଶିତ । ଟସର ଚାଷ ଗବେଷଣାରେ ସଫଳତା ନିମନ୍ତେ କେନିଆସ୍ଥିତ ଆନ୍ତର୍ଜାତିକ କୀଟ ଶରୀରତତ୍ତ୍ୱ ଏବଂ ପରିବେଶ ବିଜ୍ଞାନ କେନ୍ଦ୍ର (ICIPE), ନାଇରୋବିକୁ ନିମନ୍ତ୍ରିତ ହୋଇଥିଲେ ୧୯୯୯ ମସିହାରେ । ବୈଜ୍ଞାନିକ ହିସାବରେ ସେ ଅନେକ ବୈଜ୍ଞାନିକ ଅନୁଷ୍ଠାନର ସଭ୍ୟ । ଏଥିସହ ସେ ଓଡ଼ିଶାର ମାଧ୍ୟମିକ ଶିକ୍ଷା ପରିଷଦ, ଉଚ୍ଚ ମାଧ୍ୟମିକ ଶିକ୍ଷା ପରିଷଦ, ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ତଥା ଭାରତର ବାଙ୍ଗାଲୋରସ୍ଥିତ କେନ୍ଦ୍ରୀୟ ରେଶମ ବୋର୍ଡ ସହ ଜଡ଼ିତ । ବର୍ତ୍ତମାନ ସୁଦ୍ଧା ତାଙ୍କର ଛଅଟି ଇଂରାଜୀ ପୁସ୍ତକ 'ଭାରତରେ କ୍ରାନ୍ତିମଣ୍ଡଳୀୟ ଟସର ରେଶମ ଚାଷ', 'ଭାରତର କ୍ରାନ୍ତିମଣ୍ଡଳୀୟ ରେଶମ କୋଷା', 'ନିରନ୍ତର ବିକାଶ ପାଇଁ ବନ୍ୟ ଟସର ରେଶମ ଚାଷ', 'ଆମ ପରିବେଶ ଆମରି ଘର', 'ଜୀବବିଜ୍ଞାନ କୁଇଜ୍', 'ସଚିତ୍ର ଜୀବବିଜ୍ଞାନ ଅଭିଧାନ' ସହ ଜାତୀୟ ପୁସ୍ତକ ଟ୍ରଷ୍ଟର ଏକ ଅନୁବାଦ ପୁସ୍ତକ 'ମାଛ' ପ୍ରକାଶିତ । ତାଙ୍କର ସ୍ୱରଚିତ ପାଞ୍ଚଟି ଓଡ଼ିଆ ପୁସ୍ତକଗୁଡ଼ିକ ହେଉଛି 'ପ୍ରକୃତି ରାଣୀର ବିଚିତ୍ର ପ୍ରାଣୀ', 'ପରିବେଶ ଓ ପ୍ରାଣୀ', 'ଆମରି ଜୀବ ଆମ ବିଭବ', 'ପାଣି ଆମ ଜୀବନ' ଓ 'ଖାଦ୍ୟ ଓ ସ୍ୱାସ୍ଥ୍ୟ' । ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଦ୍ୱାରା ପ୍ରକାଶିତ ଦୁଇଟି ପୁସ୍ତକ 'ପ୍ରାଣୀବିଜ୍ଞାନ ପରିଭାଷା' ଓ 'ଉଦ୍ଭିଦ ଓ ପରିପାର୍ଶ୍ୱ ଅଭିଧାନ'ର ସେ ସହଲେଖକ । ପ୍ରକାଶିତ ପୁସ୍ତକ ସହ 'ଅଦ୍ଭୁତ ବିହାଣୀ ବୁଢ଼ିଆଣୀ' ନାମକ ପୁସ୍ତକ ରହିଛି ପ୍ରକାଶନ ଅପେକ୍ଷାରେ ।

ଅଧ୍ୟାପନା, ଗବେଷଣା ତଥା ବିଜ୍ଞାନକୁ ଲୋକମାନଙ୍କ ପାଖରେ ପହଞ୍ଚାଇବାର ପ୍ରଚେଷ୍ଟା ନିମିତ୍ତ ଆମେରିକାସ୍ଥ ନିଉୟର୍କ ବିଜ୍ଞାନ ଏକାଡେମୀ ଡକ୍ଟର ମହାନ୍ତିଙ୍କୁ ଏକ ସଭ୍ୟ ହିସାବରେ ମନୋନୀତ କରିବା ସହ ଇଂଲଣ୍ଡର କେମ୍ବ୍ରିଜସ୍ଥିତ ଆନ୍ତର୍ଜାତିକ ଜୀବନୀ କେନ୍ଦ୍ର ଦ୍ୱାରା 'ବିଂଶ ଶତାବ୍ଦୀ ଖ୍ୟାତି ପୁରସ୍କାର' ପାଇଁ ସେ ଆମନ୍ତ୍ରିତ । ଏହାଛଡ଼ା ସଫଳ ଗବେଷଣା ନିମନ୍ତେ ଆମେରିକୀୟ ଜୀବନୀ ପ୍ରତିଷ୍ଠାନର ଗବେଷଣା ବୋର୍ଡ଼ ଉପଦେଷ୍ଟାମଣ୍ଡଳୀକୁ ସେ ସଭ୍ୟ ଭାବରେ ମନୋନୀତ ।